# ମଣିଷ ଓ ତା ଶରୀର

# (MAN AND HIS BODIES)

ମୂଳ ରଚନା :
ଡାକ୍ତର ଆନି ବେଶାନ୍ତ

ଅନୁବାଦକ :
ରାମଚନ୍ଦ୍ର ପଟ୍ଟନାୟକ



# ମଣିଷ ଓ ତା ଶରୀର

## (MAN AND HIS BODIES)


ପ୍ରକାଶକ :

**ରାମଚନ୍ଦ୍ର ପଟ୍ଟନାୟକ**

ପ୍ରାପ୍ତି ସ୍ଥାନ -

ଉତ୍କଳ ବ୍ରହ୍ମବିଦ୍ୟା ସମିତି
କଟକ ଲଜ, କାଳିଗଳି
କଟକ - ୭୫୩୦୦୨
ବ୍ରହ୍ମବିଦ୍ୟା ଭବନ, ଗୌତମ ନଗର
ଭୁବନେଶ୍ୱର - ୭୫୧୦୧୪

**ରାମଚନ୍ଦ୍ର ପଟ୍ଟନାୟକ**
ପ୍ଲଟ୍:ନଂ: ୩୦୭ବି - ଗଙ୍ଗନଗର ଛକ
ଭୁବନେଶ୍ୱର - ୭୫୧୦୦୧

ଡି.ଟି.ପି - **ଆଶା ପ୍ରିଣ୍ଟର୍ସ**, କଟକ - ୧୦
ଦୂରଭାଷ - (୦୬୭୧) ୬୧୧୫୫୭

ମୂଲ୍ୟ : ଟ.୩୩.୦୦

# ସୂଚୀପତ୍ର





# ବ୍ରହ୍ମବିଦ୍ୟା ସମିତି

ବ୍ରହ୍ମବିଦ୍ୟା ସମିତି (Theosophical Society) ପୃଥିବୀର ଯେ କୌଣସି ଧର୍ମରେ ବିଶ୍ୱାସ କରୁଥିବା ବା କୌଣସି ଧର୍ମରେ ବିଶ୍ୱାସ କରୁ ନଥିବା, ସମିତିର ଉଦ୍ଦେଶ୍ୟଗୁଡ଼ିକ ଦ୍ୱାରା ଅନୁପ୍ରାଣୀତ ହୋଇ ନାନା ଧର୍ମମତ ଭିତରେ ଥିବା ବିରୋଧ ଭାବ ଦୂର କରିବା ପାଇଁ ଇଚ୍ଛା କରୁଥିବା ଏବଂ ବିଭିନ୍ନ ଧର୍ମମତର ଶୁଭସଂକଳ୍ପଧାରୀ ଲୋକମାନଙ୍କୁ ସେମାନଙ୍କ ଧର୍ମମତ ନିର୍ବିଶେଷରେ ସମ୍ମିଳିତ କରି, ଧର୍ମର ଅନ୍ତର୍ନିହିତ ସତ୍ୟଗୁଡ଼ିକୁ ଉପଲବ୍ଧିରେ ଆଣି, ତହିଁରୁ ଲବ୍ଧ ଫଳକୁ ଅନ୍ୟମାନଙ୍କ ସହିତ ବଣ୍ଟନ କରିବା ଇଚ୍ଛା ନେଇ ଏକତ୍ରିତ ହୋଇଥିବା ବିଦ୍ୟାର୍ଥୀମାନଙ୍କ ଦ୍ୱାରା ଗଠିତ ।

ସତ୍ୟର ଏକ ମିଳିତ ଅନୁସନ୍ଧାନ ପ୍ରତି ଆକାଂକ୍ଷା ହିଁ ଏହି ମିଳିତ ଉଦ୍ୟମର ବନ୍ଧନ ସୂତ୍ର; କୌଣସି ଏକ ସାଧାରଣ ମତ ବାଦ ପ୍ରତି ବିଶ୍ୱାସ ବା ଶ୍ରଦ୍ଧା ପ୍ରକଟ କରିବା ନୁହେଁ । ସେମାନଙ୍କ ମତରେ ସତ୍ୟର ସନ୍ଧାନ ଗଭୀର ଅନୁଶୀଳନ, ମନନ, ଜୀବନ ଯାପନର ପବିତ୍ରତା ଓ ଉଚ୍ଚ ଆଦର୍ଶ ପ୍ରତି ଭକ୍ତିଦ୍ୱାରା ଲାଭ କରାଯାଇପାରେ । ସେମାନେ ବିଶ୍ୱାସ କରନ୍ତି ସତ୍ୟ ରତ୍ନ କେବଳ ନିଜ ପ୍ରଚେଷ୍ଟା ବଳରେ ଲାଭ କରାଯାଇଥାଏ । ଏହା ବାହାରୁ କୌଣସି ଅଧିକାରୀଙ୍କ କରୁଣାର ଦାନ ବା ନିର୍ଦ୍ଦିଷ୍ଟ ସୂତ୍ର ବା ମତବାଦର ଅନୁସରଣ ବଳରେ ପ୍ରାପ୍ତ ନୁହେଁ । ସେମାନଙ୍କ ମତରେ ବିଶ୍ୱାସ ବ୍ୟକ୍ତିଗତ ଅଧ୍ୟୟନ ଓ ସ୍ୱଭାବ ଜାତ ଜ୍ଞାନର ଫଳ, ଏହାର ପୂର୍ବବର୍ତ୍ତୀ କାରଣ ନୁହେଁ କିମ୍ବା ଜ୍ଞାନରେ ପ୍ରତିଷ୍ଠିତ କୌଣସି ମତବାଦ ଅନୁରକ୍ଷଣ ନୁହେଁ ।

ସେମାନେ ସମସ୍ତଙ୍କ ପ୍ରତି ସହନଶୀଳ, ଏପରି କି ଅସହିଷ୍ଣୁ ପ୍ରତି ମଧ୍ୟ । ସେମାନେ ଏହି ସହିଷ୍ଣୁତାକୁ ନିଜର ଉଦାରତା ବୋଲି ବିଚାର ନ କରି ବରଂ କର୍ତ୍ତବ୍ୟ କର୍ମ ହିସାବରେ ସମ୍ପାଦନ କରି ଥାଆନ୍ତି । ସେମାନେ ଅଜ୍ଞାନ ଦୂର କରିବାକୁ ଚାହାନ୍ତି ଦଣ୍ଡ ଦେବାକୁ ନୁହେଁ । ସେମାନେ ପ୍ରତ୍ୟେକ ଧର୍ମକୁ ଏକ ଦିବ୍ୟ ପ୍ରଜ୍ଞାଲୋକର ପ୍ରକାଶ ଭାବରେ ଦେଖନ୍ତି ଏବଂ ଅନ୍ୟ କାହାର ଧର୍ମକୁ ନିନ୍ଦା କରିବା ପରିବର୍ତ୍ତେ ଅନୁଶୀଳନରେ ଯତ୍ନବାନ ହୋଇ ଥାଆନ୍ତି । ସେଥିରେ ଧର୍ମାନ୍ତର କରଣର ପ୍ରଶ୍ନ ହିଁ ନାହିଁ । ସେମାନଙ୍କର ଉଦ୍ଦେଶ୍ୟ ''ଶାନ୍ତି'' ଓ ଲକ୍ଷ୍ୟ ''ସତ୍ୟ'' ।

# ବ୍ରହ୍ମବିଦ୍ୟା

ବ୍ରହ୍ମବିଦ୍ୟା ବା ଥିଓସଫି ସେହି ସତ୍ୟଗୁଡ଼ିକ ଉପରେ ପ୍ରତିଷ୍ଠିତ ଯାହା ସବୁ ଧର୍ମର ମୂଳତତ୍ତ୍ୱ କିନ୍ତୁ କେହି କେବଳ ତାଙ୍କର ଅଧିକାର ଭୁକ୍ତ ବୋଲି ଦାବୀ କରି ପାରିବେ ନାହିଁ । ଏହାର ପ୍ରଦତ୍ତ ଦର୍ଶନ ଜୀବନକୁ ସହଜ ବୋଧ କରିଦିଏ ଏବଂ ନ୍ୟାୟ ଓ ପ୍ରେମର ପଥ ଦେଖାଇ ଜୀବନକୁ ବିକାଶ ପଥରେ ଆଗେଇ ଦିଏ । ବ୍ରହ୍ମବିଦ୍ୟା ମୃତ୍ୟୁର ଉଚିତ ସ୍ଥାନ ନିରୂପଣ କରି ଜଣାଇ ଦିଏ ଯେ ଏହା ଅନନ୍ତ ଜୀବନ ପ୍ରବାହ ମଧ୍ୟରେ ବାରମ୍ବାର ଘଟୁଥିବା ଏକ ଘଟଣା ଯାହା ପୂର୍ଣ୍ଣତର ଓ ଉଜ୍ଜ୍ୱଳତର ସ୍ଥିତି ପ୍ରତି ଦ୍ୱାର ଉନ୍ମୁକ୍ତ କରିଦିଏ । ଏହା ଜଗତରେ ବିଜ୍ଞାନ ଭିତ୍ତିକ ଧାରଣା ସୃଷ୍ଟି କରେ ଏବଂ ମଣିଷକୁ ବୁଝାଇ ଦିଏ ଯେ ଆତ୍ମା ହିଁ ତାର ପ୍ରକୃତ ସ୍ୱରୂପ ଏବଂ ଦେହ ଓ ମନ ତାର ଆଜ୍ଞାବହ ମାତ୍ର । ଧର୍ମମତ, ଶାସ୍ତ୍ର ଓ ଗ୍ରନ୍ଥମାନଙ୍କର ପ୍ରଚ୍ଛନ୍ନ ଅର୍ଥଗୁଡ଼ିକ ସମ୍ବନ୍ଧରେ ସଠିକ ଆଲୋକପାତ କରି ବୌଦ୍ଧିକ ତତ୍ତ୍ୱାବଧାନରେ ଏପରି ପ୍ରମାଣିତ କରେ ଯେ ସ୍ୱାଭାବିକ ଚିନ୍ତାରେ ସେଗୁଡ଼ିକ ଚିର ସ୍ୱତଃପ୍ରମାଣିତ ପରି ଜଣାଯାଏ ।

ବ୍ରହ୍ମବିଦ୍ୟା ସମିତିର ସଦସ୍ୟମାନେ ଏହି ସତ୍ୟଗୁଡ଼ିକର ଅନୁଶୀଳନ କରି ଜୀବନରେ ପ୍ରତିଫଳିତ କରିବାକୁ ସଚେଷ୍ଟ ହୋଇ ଥାଆନ୍ତି । ଯେଉଁମାନେ ସତ୍ୟାନୁସନ୍ଧାନରେ ଆଗ୍ରହୀ, ସହିଷ୍ଣୁ ହେବାରେ ଯତ୍ନବାନ, ଉଚ୍ଚ ଆଦର୍ଶ ପ୍ରତି ଦୃଷ୍ଟି ସମ୍ପନ୍ନ ଏବଂ ଅଧ୍ୟବସାୟୀ କର୍ମୀ ସେମାନଙ୍କୁ ସଦସ୍ୟ ହେବା ପାଇଁ ସମିତି ସାଦର ଆହ୍ୱାନ କରୁଛି । ଥିଓସଫିଷ୍ଟ ହେବା ସଦସ୍ୟଙ୍କ ନିଜ ଉପରେ ନିର୍ଭର କରେ ।



# ଅଗ୍ରଲେଖ

ବ୍ରହ୍ମବିଦ୍ୟା ଶିକ୍ଷାର୍ଥୀମାନେ ମଣିଷର ତାତ୍ତ୍ୱିକ ସ୍ଥିତି, ବିଶ୍ୱ ବିକାଶ ଧାରାରେ ମଣିଷର ସ୍ଥାନ ଓ ମଣିଷର ବିକାଶ ଯୋଜନା ସମ୍ବଳିତ ନିମ୍ନଲିଖିତ ସାତ ଖଣ୍ଡ ପୁସ୍ତକକୁ ପ୍ରାରମ୍ଭିକ ପାଠ୍ୟଭାବରେ ଗ୍ରହଣ କରି ଥାଆନ୍ତି । ସେଗୁଡ଼ିକ (୧) ମନୁଷ୍ୟ ଓ ତାର ସପ୍ତତତ୍ତ୍ୱ (୨) ପୁନର୍ଜନ୍ମ (୩) ମୃତ୍ୟୁ ଓ ତାପରେ (୪) କର୍ମ (୫) ଜ୍ୟୋତିର୍ମୟ ମଣ୍ଡଳ ବା ଭୁବଲୋକ (୬) ସ୍ୱର୍ଗଲୋକ (୭) ମଣିଷ ଓ ତା ଶରୀର । ଏହି ଗ୍ରନ୍ଥଗୁଡ଼ିକ ସରଳ ଓ ପ୍ରାଞ୍ଜଳ ଭାବରେ ମଣିଷ କିପରି ତା ସ୍ଥୂଳ ଶରୀର, ଇଥରୀୟ ଶରୀର, କାମନା ଶରୀର ଓ ମାନସ ଶରୀର ସାହାଯ୍ୟରେ ଏହି ପାର୍ଥିବ ଲୋକରେ, ପିତୃ ଲୋକରେ ଓ ସ୍ୱର୍ଗ ଲୋକରେ କାର୍ଯ୍ୟ କରିଥାଏ, ଯଦିଓ ସେ କଥା ତାର ସ୍ଥୂଳ ମସ୍ତିଷ୍କରେ ବୁଝି ପାରେ ନାହିଁ, ତାହା ବର୍ଣ୍ଣନ କରିଛନ୍ତି । ଏହା ବିଶ୍ୱର ନିୟମ ଯେ ମଣିଷ ରୂପଗ୍ରହଣ କରିବା ପରଠାରୁ ଜୀବନ୍ମୁକ୍ତ ମହାତ୍ମା ହେବା ପର୍ଯ୍ୟନ୍ତ ଏହି ମର୍ତ୍ତ୍ୟ ଲୋକରେ ବାରମ୍ବାର ଜନ୍ମ ନେଉଥାଏ ଏବଂ ପ୍ରତ୍ୟେକ ଜୀବନକାଳ ମଧ୍ୟରେ ଉକ୍ତ ଶରୀରମାନଙ୍କ ସାହାଯ୍ୟରେ କର୍ମ କରି ଅଭିଜ୍ଞତା ଅର୍ଜନ କରୁଥାଏ ଏବଂ ଅଭିଜ୍ଞତା ବଳରେ ପୂର୍ଣ୍ଣତା ଲାଭ କରି ଜୀବନ୍ମୁକ୍ତ ହୋଇଯାଏ । ଏଠାରେ ଜନ୍ମଗ୍ରହଣ କରିବା ପରଠାରୁ ଗୋଟିଏ ମୁହୂର୍ତ୍ତ ପାଇଁ ମଧ୍ୟ କର୍ମ ନ କରି ରହିପାରେ ନାହିଁ । ଶରୀରମାନଙ୍କ ବିନା ପ୍ରକୃତ ମଣିଷ (ଜୀବାତ୍ମା) କର୍ମ କରି ପାରିବ ନାହିଁ । ସୁତରାଂ ମଣିଷ ପାଇଁ ଶରୀର ବିନା କର୍ମ ନାହିଁ, କର୍ମ ବିନା ଅଭିଜ୍ଞତା ନାହିଁ, ଅଭିଜ୍ଞତା ବିନା ବିକାଶ ନାହିଁ କି ପୂର୍ଣ୍ଣତା ନାହିଁ । ସେଥିପାଇଁ ଆମେ ଅନେକ ଶିକ୍ଷିତ ଲୋକଙ୍କ ମୁହଁରେ କାଳିଦାସଙ୍କ ବାକ୍ୟଟି- ''ଶରୀର ମାଦ୍ୟଂ ଖଳୁ ଧର୍ମ ସାଧନଂ'' ଶୁଣୁ । କିନ୍ତୁ ଏହା କିପରି ହେବ କେହି ବୁଝନ୍ତି ନାହିଁ ।

କେହି ଏହି ସ୍ଥୂଳ ଶରୀରକୁ ସୁଖ ଦେବା ସର୍ବ ଶ୍ରେଷ୍ଠ କର୍ତ୍ତବ୍ୟ ବିଚାରି ତାକୁ ସମସ୍ତ ଭୋଗ ଓ ଆଳସ୍ୟର ସୁଯୋଗ ଦେଇ ଶେଷରେ ରୋଗମୟ କରି ତୋଳନ୍ତି । ଅନ୍ୟ କେତେ ଲୋକ ସ୍ଥୂଳ ଶରୀରକୁ ସୁଗଠିତ କରି ସ୍ୱଚ୍ଛନ୍ଦ ଜୀବନ ଯାପନ କରିବାକୁ ଶ୍ରେଷ୍ଠତମ ଅବସ୍ଥା ବୋଲି ଗ୍ରହଣ କରି ସୁସ୍ଥ ସବଳ

ସ୍ଥୂଳ ଶରୀରଟିଏ ଧାରଣ କରି ସନ୍ତୁଷ୍ଟ ରହନ୍ତି । ଆଉ କେତେକ ଲୋକ କୃଚ୍ଛ୍ର ଶରୀର ସାଧନ ଦ୍ୱାରା ନିମ୍ନ ଶ୍ରେଣୀର ଅଲୌକିକ ଶକ୍ତି ଲାଭ କରିବା ପାଇଁ ଶରୀରକୁ ଅଶେଷ କ୍ଲେଶ ଦେଇ ଥାଆନ୍ତି । ଏମାନେ ସମସ୍ତେ କିନ୍ତୁ ଦେଖୁ ଥାଆନ୍ତି ଇନ୍ଦ୍ରିୟମାନଙ୍କୁ ଧାରଣ କରି ଥିବା ମଣିଷର ସ୍ଥୂଳ ଶରୀରଟିକୁ ଯାହା ଆକାର, ବଳ, ଗତି, ସ୍ଥାୟିତ୍ୱ ଓ ବିକାଶରେ ଅତି ସୀମିତ ।

କିନ୍ତୁ ମଣିଷର ସ୍ଥୂଳ, ସୂକ୍ଷ୍ମ, ଦୃଶ୍ୟମାନ ଓ ଅଦୃଶ୍ୟ ସାତ ଗୋଟି ଶରୀର ଅଛନ୍ତି । ସେମାନଙ୍କ ମଧ୍ୟରୁ ଯେଉଁ ଶରୀର ଯେଉଁ ଲୋକରେ କାର୍ଯ୍ୟ କରେ ତାହା ସେହି ଲୋକର ସ୍ଥୂଳ ସୂକ୍ଷ୍ମ ଉପାଦାନରେ ଗଠିତ ହୋଇଛି । ଆଗରୁ କୁହାଯାଇଛି ଏମାନେ ଇହଲୋକ, ପିତୃ ଲୋକ (ଅନ୍ତରିକ୍ଷ ଲୋକ) ଓ ସ୍ୱର୍ଗ ଲୋକରେ କାର୍ଯ୍ୟ କରିପାରନ୍ତି । ଏହି ପାର୍ଥିବ ଲୋକରେ ଆମେ ସ୍ଥୂଳ ରକ୍ତମାଂସ ଶରୀର ସାହାଯ୍ୟରେ ଯେପରି ସଚେତନ ଅବସ୍ଥାରେ କାର୍ଯ୍ୟ କରି ପାରୁଛେଁ ସେହିପରି ଅଦୃଶ୍ୟ ସୂକ୍ଷ୍ମ ଶରୀରଗୁଡ଼ିକୁ ଶୁଦ୍ଧ ଓ କାର୍ଯ୍ୟ ଦକ୍ଷ ରଖିଲେ, ଇହ ଜଗତରେ ସଚେତନ ଥିବା ଅବସ୍ଥାରେ ମଧ୍ୟ ସେମାନେ ଅନ୍ତରିକ୍ଷ ଓ ସ୍ୱର୍ଗଲୋକରେ ସଚେତନ ରହି କାର୍ଯ୍ୟ କରି ପାରିବେ । ତାପରେ ମଣିଷ ପାଇଁ ପାର୍ଥିବ ଲୋକ, ପିତୃଲୋକ ଓ ସ୍ୱର୍ଗ ଲୋକ ଭିତରେ ପାର୍ଥକ୍ୟ ଦୂର ହୋଇ ଯିବ । ସେ ମର୍ତ୍ତ୍ୟରେ ମରଣଶୀଳ ସ୍ଥୂଳ ଶରୀରରେ ଥିଲା ବେଳେ ମଧ୍ୟ ଅମରତ୍ୱ ଉପଭୋଗ କରି ପାରିବ । ସୀମିତ ସ୍ଥୂଳ ମସ୍ତିଷ୍କର ଶକ୍ତି ବାହାରେ ଲୋକୋତ୍ତରରୁ ଅତିନ୍ଦ୍ରିୟ ଶକ୍ତି ଲାଭ କରି, ଅସୀମ ଜ୍ଞାନ ଓ କାର୍ଯ୍ୟ ଦକ୍ଷତା ଲାଭ କରି ଇହ ଲୋକର ଜୀବନକୁ ପବିତ୍ର, ସୁଖମୟ ଓ ଗୌରବ ମଣ୍ଡିତ କରି ପାରିବ ।

'ମଣିଷ ଓ ତା ଶରୀର' ପୁସ୍ତକରେ ଡା: ଆନିବେଶାନ୍ତ ଏହାର ସୂତ୍ର ସରଳ ବୈଜ୍ଞାନିକ ପ୍ରଣାଳୀରେ ବ୍ୟାଖ୍ୟା କରିଛନ୍ତି । ଏହା ଯେପରି ବିଜ୍ଞାନ ସମ୍ମତ ସେପରି ତାତ୍ତ୍ୱିକ ଓ ଯୋଗନିଷ୍ଠ ହୋଇଛି । ସାଧାରଣ ଖଟିଖିଆ ଆଧୁନିକ କାର୍ଯ୍ୟବ୍ୟସ୍ତ ଜୀବନରେ ଅନୁଶୀଳନ ଓ ଅନୁସରଣ କରି ହେବା ଭଳି ସହଜ ବୋଧଗମ୍ୟ ଉପସ୍ଥାପନା ଏହାକୁ ସର୍ବଜନ ଗ୍ରାହ୍ୟ କରିଛି ।

ଏହି ଗ୍ରନ୍ଥରେ ମଣିଷ ଶରୀରକୁ ଗଠନ କରୁଥିବା ସପ୍ତତତ୍ତ୍ୱ, ପାର୍ଥିବ, ଅନ୍ତରିକ୍ଷ, ସ୍ୱର୍ଗ ଆଦି ଲୋକମାନଙ୍କରେ ଚଳିବା ପାଇଁ ଥିବା ସ୍ଥୂଳ ସୂକ୍ଷ୍ମ ଶରୀରମାନଙ୍କ ସ୍ୱରୂପ ଓ ସେମାନଙ୍କ ଭିତରେ ଥିବା ସମ୍ବନ୍ଧ ତଥା ପ୍ରତ୍ୟେକ

ଶରୀରର ବିଶୋଧନ, ପୁଷ୍ଟିକରଣ, ଦକ୍ଷତା ବୃଦ୍ଧି କରିବା ଉପାୟ ବିଷୟରେ ବିଶଦ ବ୍ୟାଖ୍ୟା ଦିଆଯାଇଛି । ଗ୍ରନ୍ଥଟିର ଅତୁଳନୀୟ ଉପାଦେୟତା ଦୃଷ୍ଟିରୁ ଡା: ଆନିବେଶାନ୍ତଙ୍କ ଭିକ୍ଟୋରିୟାଙ୍କ କାଳର ଇଂରାଜୀକୁ ବହୁ ଆୟାସ ସହକାରେ ଯଥା ସମ୍ଭବ ସରଳ ଓଡ଼ିଆ ଭାଷାରେ ଅନୁବାଦ କରିଛି । ଆଶାକରେଁ ଓଡ଼ିଶାର ଭାଇ ଭଉଣୀମାନେ ଏହାର ସୁଯୋଗ ନେବେ । ମୁଁ ଦୃଢ଼ ନିଶ୍ଚୟ ଗ୍ରନ୍ଥଟି ପାଠ କଲାପରେ ପ୍ରତ୍ୟେକ ପାଠକ ଜୀବନ ବିଷୟରେ ନୂତନ ଜ୍ଞାନ ଓ ଆଲୋକ ପାଇବେ ।

ଭାଷାର ସମସ୍ତ ସରଳତା ସତ୍ତ୍ୱେ ପାଠକ ମନେ ରଖିବେ ଏହା ବ୍ରହ୍ମବିଦ୍ୟାର ଅଙ୍ଗ । ବିଦ୍ୟା ସର୍ବଦା ଶକ୍ତି ଉନ୍ମିଳନ କରାଏ । ପାଠକ ପ୍ରଥମ ପାଠରେ ସବୁ ବୁଝି ନ ପାରିଲେ ହତାଶ ବା ବିରକ୍ତ ନ ହୋଇ ଯଦି ପାଠ୍ୟ ପୁସ୍ତକପରି ପାଦକୁ ପାଦ ମିଳାଇ ବାରମ୍ବାର ପଢ଼ିବେ ତେବେ ଅପୂର୍ବ ଜ୍ଞାନର-ଗନ୍ତାଘରର ଦ୍ୱାର ଖୋଲିଯିବ, ନୂଆ ଶକ୍ତି ଓ ଆଲୋକ ଲାଭ କରି ଏହି ଛାୟା ମାୟା ବହୁଳ ଜଗତର ପ୍ରକୃତ ଆନନ୍ଦ ଉଜ୍ଜ୍ୱଳ ରୂପ ଦେଖି ପାରିବେ ।

ଶ୍ରୀଯୁକ୍ତ ସୁଶୀଳ କୁମାର ଦାଶ ଆଇ.ଏ.ଏସ. (ଅବସର ପ୍ରାପ୍ତ) ମହୋଦୟ ମୋର ପାଣ୍ଡୁଲିପିଟି ଆମୂଳ ଚୂଳ ପାଠ କରି ଅନେକ ମୂଲ୍ୟବାନ ସଂଶୋଧନ ପୂର୍ବକ ମାର୍ଜିତ କରି ଥିବାରୁ ମୁଁ ତାଙ୍କଠାର ଚିର କୃତଜ୍ଞ ।

ଗ୍ରନ୍ଥଟି ବହୁ ଦିନରୁ ପ୍ରକାଶ ପାଇଁ ପ୍ରସ୍ତୁତ କରାଯାଇଥିଲେ ସୁଦ୍ଧା ଅର୍ଥାଭାବରୁ ପ୍ରକାଶିତ ହୋଇ ପାରୁ ନଥିଲା । ମୋର କଲ୍ୟାଣୀୟ ବନ୍ଧୁ ଶ୍ରୀମାନ୍ ଅଧର ଚନ୍ଦ୍ର ମହାପାତ୍ର ଏହି ପୁସ୍ତକ ପ୍ରକାଶ ପାଇଁ କଟକର ବକ୍ସିବାଜାର ... ବାଟୀ ରୋଡ଼ ନିବାସୀ ସ୍ପେସାଲ କ୍ଲାସ କଣ୍ଟ୍ରାକ୍ଟର ଶ୍ରୀଯୁକ୍ତ ପ୍ରଫୁଲ୍ଲ ଚନ୍ଦ୍ର ଦାଶ ମହୋଦୟଙ୍କଠାରୁ ଆର୍ଥିକ ସାହାଯ୍ୟ ବ୍ୟବସ୍ଥା କରି କାର୍ଯ୍ୟଟିକୁ ସୁଗମ କରି ଦେଲେ । ଏହି ସାଧୁ ଉଦ୍ୟମ ପାଇଁ ମୁଁ ଶ୍ରୀଯୁକ୍ତ ପ୍ରଫୁଲ୍ଲ ଚନ୍ଦ୍ର ଦାଶ ଓ ଶ୍ରୀମାନ ଅଧର ଚନ୍ଦ୍ର ମହାପାତ୍ରଙ୍କୁ ମୋ ଅନ୍ତରର ଶୁଭ କାମନା ସହ ଧନ୍ୟବାଦ ଅର୍ପଣ କରୁଛି ।

ସର୍ବ ଶେଷରେ ମୋର ପ୍ରାର୍ଥନା ଏହି ଗ୍ରନ୍ଥ ପଦେ ପଦେ ପାଠକର କଲ୍ୟାଣ ପ୍ରଦ ହେଉ ।

*ବିନୀତ*

**ଅନୁବାଦକ**

## ଡାକ୍ତର ଆନିବେଶାନ୍ତ

ଡାକ୍ତର ଆନି ବେଶାନ୍ତ ଜଣେ ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନା ମହିଳା ଥିଲେ । ତାଙ୍କ ସମସ୍ତ ଜୀବନ ଯେପରି ମଣିଷ ଜାତିର ଅଭ୍ୟୁଦୟ ନିମନ୍ତେ ବହୁବିଧ ନିଃସ୍ୱାର୍ଥ କର୍ମ ମୟ ଥିଲା, କର୍ମ କ୍ଷେତ୍ର ସେହିପରି ବିଶ୍ୱବ୍ୟାପକ ଥିଲା । ବିଶେଷ କରି ଇଉରୋପ, ଏସିଆ ଓ ଅଷ୍ଟ୍ରେଲିଆ ମହାଦେଶ ତିନୋଟିରେ ସେ ତାଙ୍କ ନିରଳସ ଲେଖନୀ ଓ ଅସାମାନ୍ୟ ବାଗ୍ମିତା ବଳରେ ସାମାଜିକ, ଅର୍ଥନୈତିକ, ରାଜନୈତିକ ଓ ଆଧ୍ୟାତ୍ମିକ ଜାଗରଣ ଆଣି ଦେଇଥିଲେ । ଜନ ସାଧାରଣଙ୍କୁ ସଂଗଠିତ କରିଥିଲେ । ତାଙ୍କର ବହୁମୁଖୀ ପ୍ରତିଭା, ନିର୍ଭୀକ ସତ୍ୟାନୁସରଣ, ସତ୍ୟପାଇଁ ଜନହିତ ପାଇଁ ସତତ ଆତ୍ମୋତ୍ସର୍ଗ କରିବାକୁ ତତ୍ପରତା, ଦୈନନ୍ଦିନ ଜୀବନର ମହାନତା ଓ ଆଧ୍ୟାତ୍ମିକ ଜୀବନର ପୂର୍ଣ୍ଣତା ତାଙ୍କୁ ବିଶ୍ୱରେ ଅଦ୍ୱିତୀୟ କରିଛି ।

ଖ୍ରୀଷ୍ଟାବ୍ଦ ୧୮୪୭ ଅକ୍ଟୋବର ପହିଲା ଦିନ ଡା. ବେଶାନ୍ତ ଲଣ୍ଡନ ନଗରରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଥିଲା ଉଇଲିୟମ ବୁର୍ଟନ ପାର୍ଶି ଉଡ ଓ ମାତାଙ୍କ ନାମ ଏମିଲି ରୋଚ ମରିସ । ତାଙ୍କ ମାଆ ଓ ବୁଢ଼ୀମା ଆଇରିସ୍ ଥିଲେ । ତାଙ୍କ ପିତା ଇଂରାଜ ଥିଲେ । ତାଙ୍କର ମାଆ ଭାରି ଧର୍ମପରାୟଣା ଥିଲେ । ପିଲାଦିନରୁ ଆନି ଧର୍ମ ପ୍ରତି ଅନୁରକ୍ତା ଥିଲେ । ସେ ୨୦ବର୍ଷ ବୟସରେ ୧୮୬୭ ମସିହାରେ ଲିଙ୍କନ ସାୟାର ଅନ୍ତର୍ଗତ ସିବ୍‌ସିର ଭିକାର (ଧର୍ମଯାଜକ) ଫ୍ରାଙ୍କ ବେଶାନ୍ତଙ୍କୁ ବିବାହ କରିଥିଲେ ।

ବିବାହ ପରେ ତାଙ୍କର ଆଧ୍ୟାତ୍ମିକ ଜାଗୃତି ଘଟି ଥିଲା । ସେ ଖ୍ରୀଷ୍ଟ ଧର୍ମରେ ପ୍ରଚଳିତ କେତେଗୁଡ଼ିଏ ଅନ୍ଧ ବିଶ୍ୱାସକୁ ସମାଲୋଚନା କରି ପ୍ରବନ୍ଧମାନ ଲେଖିଲେ । ଉକ୍ତ ସମାଲୋଚନା ତାଙ୍କର ଅଜ୍ଞତା ଜନିତ କୌଣସି ଆକ୍ଷେପ ବା ବିଦ୍ରୁପ ମୂଳକ ନଥିଲା । ବରଂ ତାଙ୍କ ଆଲୋଚନା ଉଚ୍ଚ କୋଟିର ଆଧ୍ୟାତ୍ମିକ ଅନୁଶୀଳନ ପ୍ରତି ତାଙ୍କର ସାତିଶୟ ଆଗ୍ରହ ପ୍ରକାଶିତ କରୁଥିଲା ।

ସେ କେବଳ ବିଶ୍ୱାସ କରିବା ପରିବର୍ତ୍ତେ ତାହାର ତାତ୍ତ୍ୱିକ ବିଚାର କରି ସେ ସବୁ ଅଧିକ ନିଷ୍ଠାର ସହତ ପାଳନ କରିବା ପାଇଁ ଏହି ଆଲୋଚନା ଆରମ୍ଭ କରିଥିଲେ । କିନ୍ତୁ ତତ୍‌କାଳୀନ ଖ୍ରୀଷ୍ଟୀୟ ସମାଜ ତାଙ୍କ ପ୍ରଶ୍ନଗୁଡ଼ିକର ଯଥାଯଥ ଉତ୍ତର ଦେଇ ପାରିନଥିଲେ । ଇଂଲଣ୍ଡର ତତ୍‌କାଳୀନ ଉଚ୍ଚତମ ଖ୍ରୀଷ୍ଟଧର୍ମ ପ୍ରବକ୍ତାଙ୍କ ସହ ସେ ସନ୍ଦେହ ମୋଚନ କରିବାକୁ ସାକ୍ଷାତ କଲେ । କିନ୍ତୁ ସେ ତାଙ୍କ ପ୍ରଶ୍ନମାନଙ୍କର ଆଲୋଚନା କରି ନଥିଲେ । ଅନ୍ଧ ଭାବରେ ଅନୁସରଣ କରିବା ପାଇଁ ଉପଦେଶ ଦେଇଥିଲେ । କିନ୍ତୁ ସେ କୌଣସି ମତକୁ ଅନ୍ଧ ଭାବରେ ଅନୁସରଣ ନ କରି କେତେକ ଉପାସନାରେ ଯୋଗ ଦେବା ବନ୍ଦ କରିଦେଲେ । ଜଣେ ଧର୍ମ ଯାଜକର ସ୍ତ୍ରୀ ହୋଇ ଧର୍ମ ଉପଦେଶ ନ ମାନିବା ମି: ବେଶାନ୍ତଙ୍କ ପ୍ରତି ଆକ୍ଷେପ ଆଣିଲା । ମି: ବେଶାନ୍ତ ମଧ୍ୟ ଧର୍ମ ସମ୍ବନ୍ଧରେ ଅତି ନିଷ୍ଠାପର ଥିଲେ । ତେଣୁ ସ୍ୱାମୀ ସ୍ତ୍ରୀଙ୍କ ଭିତରେ ମନାନ୍ତର ଘଟିଲା ।

ବୈବାହିକ ଜୀବନରେ ସେ ଗୋଟିଏ ପୁତ୍ର ଓ ଗୋଟିଏ କନ୍ୟା ଲାଭ କରିଥିଲେ । ସ୍ୱାମୀଙ୍କ ରକ୍ଷଣଶୀଳତା ଓ ତାଙ୍କ ନିଜର ସତ୍ୟ ପ୍ରତି ନିଷ୍ଠାଜନିତ ଧର୍ମ ଜିଜ୍ଞାସା ତାଙ୍କୁ ସ୍ୱାମୀଙ୍କ ଅପ୍ରିୟ କରିଥିଲା । ସେଥିପାଇଁ ବୈବାହିକ ଜୀବନ ଆଦୌ ସୁଖମୟ ହୋଇ ପାରିନଥିଲା । ତାଙ୍କ ବୈବାହିକ ଜୀବନର ଯନ୍ତ୍ରଣା ଏତେ ଗୁରୁତର ଥିଲା ଯେ ଆତ୍ମହତ୍ୟା କରି ନିର୍ଯ୍ୟାତନାରୁ ମୁକ୍ତି ଲାଭ କରିବା ପାଇଁ ଏକଦା ସେ ଚେଷ୍ଟା କରୁଥିଲେ । ବିଷ ଖାଇବାକୁ ଉଦ୍ୟତ ହେବା ସମୟରେ ଏକ ଦୃଢ଼ ଗମ୍ଭୀର କଣ୍ଠର ସୁସ୍ପଷ୍ଟ ଅନୁଯୋଗ ଶୁଣିବାକୁ ପାଇଲେ - ''ଭୀରୁ, ପର ପାଇଁ ଆତ୍ମବଳି ଦେବାର ସ୍ୱପ୍ନ ଦେଖୁଛୁ, କେତେଟା ବର୍ଷ ପାଇଁ ଦୁଃଖ ସହ୍ୟ କରି ପାରୁ ନାହୁଁ ?'' ତାଙ୍କର ବିବେକ ଜାଗ୍ରତ ହେଲା । ସେ ବିଷକୁ ଝରକା ବାଟେ ଫିଙ୍ଗି ଦେଲେ । ସ୍ୱାମୀଙ୍କ ସହିତ ଏକତ୍ର ରହିବା ଅସହ୍ୟ ହେବାରୁ ଆନି ବିବାହ ବିଚ୍ଛେଦ ବ୍ୟବସ୍ଥା ପତ୍ର କରି ମାଆଙ୍କ ପାଖରେ ଅଲଗା ରହିଲେ । ପୁଅ ଆର୍ଥର ଡିଗ୍‌ବି ବେଶାନ୍ତ ସ୍ୱାମୀଙ୍କ ତତ୍ତ୍ୱାବଧାନରେ ରହିଲେ ଏବଂ କନ୍ୟା ମାବେଲ ତାଙ୍କ ତତ୍ତ୍ୱାବଧାନରେ ରହିଲେ ।

ସେ ଖ୍ରୀଷ୍ଟ ଧର୍ମରୁ ଆସ୍ଥା ହରାଇ ଯୁକ୍ତିବାଦୀ (Free thinker) ସମାଜରେ ଯୋଗ ଦେଲେ । ସେଥିରେ ଯୋଗ ଦେବା ପରେ ସେତେବେଳର

ଇଂଲଣ୍ଡରେ ପ୍ରଧାନ ଯୁକ୍ତିବାଦୀ ଗୋଷ୍ଠୀର ସଭାପତି ଚାର୍ଲସ ବ୍ରାଡଲଫଙ୍କ (Charles Bradlaugh) ସହଯୋଗ ଲାଭ କଲେ ଓ ସେହି ଦଳର ମୁଖପତ୍ର National Reformer ରେ କାମ କଲେ । ପରେ ସେ ଯୁକ୍ତିବାଦୀ ଦଳର ଉପସଭାପତି ଓ ପତ୍ରିକାର ସହସମ୍ପାଦିକା ହେଲେ । ଅବସ୍ଥା ଚକ୍ର ତାଙ୍କୁ ଅନେକ ଗୁଡ଼ିଏ ସଂଘର୍ଷ ଭିତରେ ପକାଇ ଥିଲା । ତନ୍ମଧ୍ୟରୁ ଅଗ୍ରଗଣ୍ୟ ହେଉଛି Fruit of Philosophy ନାମକ ଏକ ପୁସ୍ତିକା ପ୍ରକାଶନ । ଏହା ସାଧାରଣରେ ନଲଟନ ପୁସ୍ତିକା (Knowlton Pamphlet) ଭାବରେ ବିଦିତ । ଏହା ଏକ ପରିବାର ନିୟନ୍ତ୍ରଣ ବିଷୟକ ପୁସ୍ତିକା । କାହାରି ଅନୁକୂଳ ବା ପ୍ରତିକୂଳ ମତାମତକୁ ଅପେକ୍ଷା ନ କରି ଜଣେ ଫରାସୀ ଲୋକଙ୍କ ଦ୍ୱାରା ପ୍ରକାଶିତ ହୋଇଥିଲା । କିନ୍ତୁ କେତେକ ରକ୍ଷଣଶୀଳ ଖ୍ରୀଷ୍ଟିୟାନଙ୍କ ପ୍ରରୋଚନାରେ ପୋଲିସ ଏହାକୁ ‘‘ଅଶ୍ଳୀଳ’’ ବୋଲି କହି ଏହାର ପ୍ରକାଶନ ନିଷେଧ କରି ଦେଲେ । ତତ୍‌କ୍ଷଣାତ୍ ପ୍ରେସ୍‌ର ସ୍ୱାତନ୍ତ୍ର୍ୟ ଦାବୀ ଉଠାଇ ମି: ବ୍ରାଡଲଫ ଓ ଶ୍ରୀମତୀ ବେଶାନ୍ତ ସେ ପତ୍ରିକା ପ୍ରକାଶନ ସପକ୍ଷରେ ଆନ୍ଦୋଳନ କଲେ ଏବଂ ତାହାକୁ ନିଜ ନାମରେ ପ୍ରକାଶ କଲେ । ଏତଦ୍ୱାରା ଶ୍ରୀମତୀ ବେଶାନ୍ତ ପରିବାର ନିୟନ୍ତ୍ରଣ ସହିତ ସମ୍ପୃକ୍ତ ହୋଇଗଲେ ସୁଦ୍ଧା ପ୍ରକୃତ ଆନ୍ଦୋଳନଟି ପ୍ରେସର ସ୍ୱତନ୍ତ୍ରତା ପାଇଁ ଥିଲା । ସେଥିପାଇଁ ମୋକଦ୍ଦମା ଚାଲିଲା ଓ ସେଥିରେ ଶ୍ରୀମତୀ ବେଶାନ୍ତ ନିଜ ପକ୍ଷରୁ ବାରିଷ୍ଟର ନ ଦେଇ ନିଜେ ଲଢ଼ିଲେ । ଜଣେ ମହିଳା ହୋଇ କୋର୍ଟରେ ମକଦ୍ଦମା ଲଢ଼ିବା କଥାରେ ବର୍ତ୍ତମାନ କିଛି ବିଚିତ୍ରତା ନାହିଁ । କିନ୍ତୁ ୧୮୮୬-୮୭ ମସିହା ବେଳକୁ ଇଂଲଣ୍ଡରେ ସ୍ତ୍ରୀଲୋକମାନଙ୍କ ସାମାଜିକ ସ୍ଥିତି ଦିଗରୁ ଦେଖିଲେ ଏହା ଅତି ବୈପ୍ଳବାତ୍ମକ କାର୍ଯ୍ୟ ଥିଲା ଏବଂ ଶିକ୍ଷା, କର୍ମ ସଂସ୍ଥାନ ଦିଗରୁ ଦେଖିଲେ ଏହା ଏକ ପ୍ରକାର ଦୁଃସାହସିକତା ଥିଲା । କିନ୍ତୁ ଆନି ସର୍ବଦା ଦୁଃସାହସିନୀ ଓ ସଂଘର୍ଷ ପ୍ରିୟା ଥିଲେ । ସେ ନିଜେ ମକଦ୍ଦମା ଲଢ଼ିଲେ ଏବଂ ଜୟଯୁକ୍ତ ହେଲେ । ଅବଶ୍ୟ ମକଦ୍ଦମା ଜିଣିବା ପରେ ସେ ଉକ୍ତ ପୁସ୍ତିକାର ପ୍ରକାଶନ ବନ୍ଦ କରି ଦେଇଥିଲେ ।

ତା’ ପରେ ତାଙ୍କ ସ୍ୱାମୀଙ୍କ ପକ୍ଷରୁ ଅଭିଯୋଗ ଆସିଲା ତାଙ୍କ ପରି ଧର୍ମ ବିମୁଖ ଅଯୋଗ୍ୟାଙ୍କ ତତ୍ତ୍ୱାବଧାନରୁ ଝିଅକୁ ନେଇଯିବା ପାଇଁ । ଏଥର

ମଧ୍ୟ ମକଦ୍ଦମା ଶ୍ରୀମତୀ ବେଶାନ୍ତ ନିଜେ ଲଢ଼ିଲେ । ଏହି ମକଦ୍ଦମାର ଜବାବ ସୁଆଲ ବାସ୍ତବିକ ଶ୍ରୀମତୀ ବେଶାନ୍ତଙ୍କ ଦକ୍ଷତା ଓ ଜଜମାନଙ୍କର ରୁକ୍ଷତାର ଏକ ଦୃଷ୍ଟାନ୍ତ କହିଲେ ଅତ୍ୟୁକ୍ତି ହେବ ନାହିଁ । ଅନେକ ଦିନ ଧରି ସେ ଜଜ୍ ଓ ସ୍ୱାମୀଙ୍କ ପକ୍ଷର ଓକିଲମାନଙ୍କ ସହ ଆଇନ ଓ ଘଟଣା ଉଭୟ ଦିଗରୁ ସମସ୍ତ ଯୁକ୍ତିର ପ୍ରତିଯୁକ୍ତି ଯୋଗାଇ ଲଢ଼ିଲେ । କିନ୍ତୁ ଜଜ୍‌ମାନେ ତାଙ୍କ ଯୁକ୍ତିବାଦୀ ସମାଜର ଜୀବନ ଧାରା ବିରୋଧି ଥିଲେ । ଶେଷରେ ସେମାନେ ତାଙ୍କ ବିରୁଦ୍ଧରେ ରାୟ ଦେଇଥିଲେ ଏବଂ କନ୍ୟାଟି ତାଙ୍କ ପାଖରୁ ଅଲଗା ହୋଇ ଯାଇଥିଲେ । ଏଥିରେ ସେ ଅତି ଶୋକାଭିଭୂତ ହୋଇ ପଡ଼ିଥିଲେ । କିନ୍ତୁ ତାଙ୍କର ପୁତ୍ର ଆର୍ଥର ଡିଗ୍‌ବି ଓ କନ୍ୟା ମାବେଲ ସର୍ବଦା ମାତାଙ୍କ ପ୍ରତି ଅନୁରକ୍ତ ଥିଲେ । ପ୍ରାପ୍ତ ବୟସ୍କ ହେବା ପରେ ଡିଗ୍‌ବି ବ୍ରହ୍ମବିଦ୍ୟା ସମିତି ପାଇଁ କାମ କରିଥିଲେ ଓ ମାବେଲ ମଧ୍ୟ ମାଆଙ୍କ ସହ ଭଲ ସମ୍ପର୍କ ରଖିଥିଲେ ।

ତାଙ୍କ ବଳିଷ୍ଠ ବ୍ୟକ୍ତିତ୍ୱର ଅନ୍ୟ ଏକ ଦିଗ ବିଷୟରେ ଏଠାରେ ପରିଚୟ ଦେବା ସମୀଚୀନ ହେବ । ସେ ୧୮୭୯ ଖ୍ରୀଷ୍ଟାବ୍ଦରେ ମ୍ୟାଟ୍ରିକ୍ୟୁଲେସନ ପାଶ କରି ବିଜ୍ଞାନ ଅଧ୍ୟୟନ କଲେ । ୧୮୮୧ ଇଣ୍ଟର ମିଡିଏଟ ପରୀକ୍ଷାରେ ପାଶ କରିବା ପରେ ଉଦ୍ଭିଦ ବିଜ୍ଞାନ ଓ ଭେଷଜରେ ଅନର୍ସ ନେଇ ସ୍ନାତକ ପରୀକ୍ଷା ପାଇଁ ପଢ଼ିଲେ । କିନ୍ତୁ ତାଙ୍କର ଜଣେ ପ୍ରଫେସର, ଯେ କି ପରୀକ୍ଷକ ମଧ୍ୟ ଥିଲେ ସେ ଆନିଙ୍କୁ ଧର୍ମ ଅବିଶ୍ୱାସୀ ବୋଲି ଦୁଇଥର ପ୍ରାକ୍ଟିକାଲ ପରୀକ୍ଷାରେ ଫେଲ କରାଇ ଦେଲେ । ସେ ପରେ ଅନୁସନ୍ଧାନ କରି ଜାଣିଲେ ଯେ ସେ ଖ୍ରୀଷ୍ଟ ଧର୍ମ ବିରୁଦ୍ଧରେ ଲେଖିଥିବାରୁ ସେ ସବୁ ପ୍ରଶ୍ନର ଉତ୍ତର ନିର୍ଭୁଲ ଭାବରେ ଦେଲେ ସୁଦ୍ଧା, ସବୁ ପ୍ରାକ୍ଟିକାଲ ସୁଚାରୁ ରୂପେ କଲେ ସୁଦ୍ଧା ସେ ପ୍ରଫେସର କେବେ ହେଲେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାକୁ ଦେବେ ନାହିଁ । ତା' ପରେ ସ୍ୱାଧୀନ ଚେତା ଶ୍ରୀମତୀ ବେଶାନ୍ତ ସେ ପରୀକ୍ଷା ଦେଲେ ନାହିଁ ।

ସେ ଏହି ଅଧ୍ୟୟନ କାଳ ମଧ୍ୟରେ ଶ୍ରମିକମାନଙ୍କୁ ବିଜ୍ଞାନ ବିଷୟରେ ଶିକ୍ଷା ଦେଉ ଥିଲେ ଏବଂ ଦଳିତ ଲୋକମାନଙ୍କ ପାଇଁ ଫରାସୀ ବିପ୍ଳବର ହିତକର ପ୍ରଭାବ ବିଷୟରେ ସାର ଗର୍ଭକ ଭାଷଣଗୁଡ଼ିକ ଦେଇଥିଲେ । ୧୮୮୫ ମସିହାରେ ସେ 'ଫାବିୟାନ୍' ସୋସାଇଟି ସହିତ ସମ୍ପର୍କ ସ୍ଥାପନ

କଲେ । ଫାବୟାନମାନେ ସମାଜବାଦୀ ଥିଲେ, କିନ୍ତୁ ହିଂସାତ୍ମକ ଆନ୍ଦୋଳନର ପକ୍ଷପାତୀ ଥିଲେ । ଶ୍ରୀମତୀ ବେଶାନ୍ତ ହିଂସାତ୍ମକ ଆନ୍ଦୋଳନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି କହିଥିଲେ ଇଂଲଣ୍ଡ ଚାହେଁ ଶାସନରେ ସମାଜରେ ସଂସ୍କାର । ଆମର ଦରକାର ଅଭ୍ୟୁଦୟ, ସଶସ୍ତ୍ର ସଂଘର୍ଷ ନୁହେଁ (Evolution not revolution) । ସେହି ବର୍ଷ ସେ 'ବ୍ରିୟାଣ୍ଟ ଓ ମେ' ଡିଆସିଲି କାରଖାନାରେ ଶ୍ରମିକମାନଙ୍କ ଅନୁଷ୍ଠାନର ସେକ୍ରେଟେରୀ ଥାଇ ଶ୍ରମିକମାନଙ୍କର ଆନ୍ଦୋଳନ ଚଳାଇଥିଲେ ଓ କାରଖାନାରେ କାର୍ଯ୍ୟ ବନ୍ଦ କରାଇ ଦେଇଥିଲେ । ୧୮୮୯ ମସିହା ବେଳକୁ ଇଂଲଣ୍ଡରେ ଏପରି କୌଣସି ସଂସ୍କାରମୂଳକ କାର୍ଯ୍ୟ ନଥିଲା ଯାହା ସମ୍ପର୍କରେ ଶ୍ରୀମତୀ ବେଶାନ୍ତ କିଛି ନା କିଛି କାମ କରି ନଥିଲେ, ଲେଖି ନଥିଲେ ବା କହି ନଥିଲେ । ସ୍ତ୍ରୀଲୋକମାନଙ୍କର ସମାଜରେ ସମାନ ଅଧିକାର ଓ ସ୍ତ୍ରୀଲୋକମାନଙ୍କର ଭୋଟ ଅଧିକାର, ଉନ୍ନତ ଗୃହ ବ୍ୟବସ୍ଥା, ସ୍କୁଲରେ ପିଲାମାନଙ୍କୁ ଖାଇବାକୁ ଯୋଗାଇବା ବ୍ୟବସ୍ଥା, ଦଣ୍ଡ ବ୍ୟବସ୍ଥାରେ ସଂସ୍କାର, ସାମ୍ରାଜ୍ୟ ଅନ୍ତର୍ଗତ ରାଜ୍ୟମାନଙ୍କୁ ସଂଯୁକ୍ତ ରାଜ୍ୟର ସୁବିଧା ପ୍ରଦାନ, ଅଙ୍ଗ ବ୍ୟବଚ୍ଛେଦ ବିରୋଧି ଆନ୍ଦୋଳନ, ଶ୍ରମିକ ସଂଗଠନ ଗଢ଼ିବା, ଜମିଜମା ସଂସ୍କାର ଆଇନରେ ସଂସ୍କାର ସମ୍ବନ୍ଧରେ ଆନ୍ଦୋଳନ, ଚିନ୍ତା ଓ ମତ ପ୍ରକାଶ କରିବାରେ ସ୍ୱାଧୀନତା ଓ ନିର୍ବାଚନ ମଣ୍ଡଳୀ ସଂସ୍କାର ପ୍ରଭୃତି ଯେତେ ଆନ୍ଦୋଳନ ସବୁରି ସହିତ ସେ ସଂପୃକ୍ତ ଥିଲେ । ଏହା ବ୍ୟତୀତ ପରାଧୀନ ଦେଶମାନଙ୍କରେ ମାନବୀୟ ଅଧିକାର ସପକ୍ଷରେ, ଯଥା - ଆଫଗାନୀସ୍ଥାନ ବିଷୟରେ ୧୮୭୯, ଟ୍ରାନ୍ସଭାଲ ବିଷୟରେ ୧୮୮୧, ଆୟାର୍ଲାଣ୍ଡ ବିଷୟରେ ୧୮୮୨ ଓ ମିଶର ବିଷୟରେ ୧୮୮୫ ରେ ପୁସ୍ତକମାନ ପ୍ରକାଶ କରିଥିଲେ । ସେ ଚାର୍ଲସ ବ୍ରାଡଲଫ ଓ ଦାଦାଭାଇ ନାରୋଜିଙ୍କ ସହିତ ମିଳିତ ଭାବରେ ଭାରତ ସପକ୍ଷରେ ଇଂଲଣ୍ଡରେ ଆନ୍ଦୋଳନ କରିଥିଲେ । କିନ୍ତୁ ୧୮୮୬ଠାରୁ ଏ ପ୍ରକାର ବସ୍ତୁତାନ୍ତ୍ରିକ ଜୀବନ ଦର୍ଶନ ତାଙ୍କୁ ଭଲ ଲାଗୁ ନଥିଲା ଯଦିଓ ଏହି ସବୁ ସାଙ୍ଗଠନିକ କାର୍ଯ୍ୟ ଭିତରେ ଥିବା ନିଷ୍କାମ କର୍ମ କରିବାର ସୁଯୋଗ ସେ ଦେଖି ପାରୁଥିଲେ ।

ଏହା ପରେ ତାଙ୍କ ଜୀବନରେ ଗୋଟିଏ ନୂତନ ଅଧ୍ୟାୟ ଆରମ୍ଭ ହେଲା । ଏ.ପି.ସିନେଟଙ୍କ ରଚିତ ଦଇଟି ବ୍ରହ୍ମବିଦ୍ୟା ବିଷୟକ ପୁସ୍ତକ

ପାଠକଲା ପରେ ତାଙ୍କୁ ଏକ ନୂତନ ଦିଗରେ ଗବେଷଣା କରିବାର ପ୍ରେରଣା ମିଳିଲା । ସେ ଆଧ୍ୟାତ୍ମିକ ବିଷୟରେ ଗବେଷଣା କରିବାକୁ ଅଗ୍ରସର ହେଲେ । ସେ ଆତ୍ମା (Soul), ମୋହ ନିଦ୍ରା (hypnotism) ପ୍ରଭୃତି ବିଷୟରେ ପୂର୍ବରୁ ଆକୃଷ୍ଟ ହୋଇଥିଲେ । ସେ ମରଣ ପରେ ମଣିଷର ଅସ୍ତିତ୍ୱ ସମ୍ପର୍କରେ ଗବେଷଣା ଚଳାଇଥିଲେ । ଏ ସବୁ ଖୁବ୍ ଆନନ୍ଦ ଦାୟକ ହେଲେ ମଧ୍ୟ ପ୍ରକୃତ ସତ୍ୟ ସନ୍ଧାନ ଦିଗରେ କିଛି ଯୁକ୍ତିଯୁକ୍ତ ତଥ୍ୟ ଯୋଗାଇ ପାରି ନଥିଲା । ଏହି ଅବସ୍ଥାରେ ଦିନେ ସେ ଫ୍ଲିଟ୍ ଷ୍ଟ୍ରିଟରେ 'ନ୍ୟାସନାଲ ରିଫର୍ମର' ପତ୍ରିକା ଅଫିସରରେ ଚିନ୍ତାମଗ୍ନ ଅବସ୍ଥାରେ ବସି ଥିବା ବେଳେ ପୁଣି ସେହି ଗମ୍ଭୀର କଣ୍ଠର ଶୂନ୍ୟବାଣୀ ଶୁଣିବାକୁ ପାଇଲେ- ''ସତ୍ୟ ଲାଭ କରିବା ପାଇଁ ତୁମେ କ'ଣ ସବୁ କିଛି ତ୍ୟାଗ କରିବାକୁ ପ୍ରସ୍ତୁତ ଅଛ ?'' ସେ ତତ୍‌କ୍ଷଣାତ୍ ଉତ୍ତର ଦେଲେ 'ହଁ ପ୍ରଭୁ' କିଏ ଏହି ପ୍ରଶ୍ନ କରିଥିଲେ ସେ ଜାଣି ନଥିଲେ । କିନ୍ତୁ ସେ ବୁଝି ପାରିଥିଲେ ଯେ ଏହା ସେହି ବାଣୀ ଯାହା ପୂର୍ବେଥରେ ତାଙ୍କୁ ବିଷ ପିଇବାରୁ ନିବୃତ୍ତ କରାଇ ଜୀବନ ରକ୍ଷା କରିବାର ପ୍ରେରଣା ଦେଇଥିଲା ।

ଏହି ଘଟଣାର କେତେ ଦିନ ପରେ ୧୮୮୯ ମସିହାରେ ''ରିଭିଭ ଅଫ ରିଭିଉଜ'' ନାମକ ପତ୍ରିକାର ସମ୍ପାଦକ ମ୍ୟାଡାମ ବ୍ଲାଭାସ୍କିଙ୍କ ଲିଖିତ 'ସିକ୍ରେଟ ଡକ୍ଟ୍ରିନ' ନାମକ ଗ୍ରନ୍ଥର ପାଣ୍ଡୁ ଲିପିଟି ତାଙ୍କ ପାଖରୁ ପଠାଇ ତା ଉପରେ ଗୋଟିଏ ସମାଲୋଚନା ଲେଖିବାକୁ ଅନୁରୋଧ କରି ପଠାଇଲେ । ତାକୁ ପାଠ କରିବା ସଙ୍ଗେ ସଙ୍ଗେ ତାଙ୍କ ମନରେ ଦୀର୍ଘ କାଳରୁ ଛପି ରହିଥିବା ସତ୍ୟର ଉସ ସତେ ଯେପରି ଉଦ୍‌ବେଳିତ ହୋଇ ଉଠିଲା । ସେ ମ୍ୟାଡାମ ବ୍ଲାଭାଟ୍‌ସ୍କିଙ୍କୁ ସାକ୍ଷାତ କଲେ । ପ୍ରଥମ ଦର୍ଶନରେ ହିଁ ତାଙ୍କ ଜୀବନର ଧାରା ସମ୍ପୂର୍ଣ୍ଣ ରୂପେ ବଦଳି ଗଲା । ସେ ତାଙ୍କର ତର୍କବାଦୀ ତଥା ସମାଜବାଦୀ ଦଳ ଛାଡ଼ି ଦେଲେ । ତାଙ୍କ ହୃଦୟରେ ଏକ ନୂତନ ସତ୍ୟ ଉଦ୍‌ଭାସିତ ହେଲା । ସେଥିରେ ସେ ଅନୁଭବ କଲେ ଯେ ସଂସାରର କ୍ଷୁଦ୍ର କ୍ଷୁଦ୍ର ଘଟଣାକୁ ନେଇ ତାର ନିରାକରଣ ବା ପ୍ରତିକାର ନିମନ୍ତେ ଆନ୍ଦୋଳନରେ ଶକ୍ତି କ୍ଷୟ କରିବା ଦ୍ୱାରା ପ୍ରକୃତ ଦୁଃଖ ଦୂର କରିହୁଏ ନାହିଁ । ବିଶ୍ୱଜନ ସେବାରେ ନିଷ୍ଠାର ସହିତ ନିଜକୁ ନିୟୋଜିତ କରିବା ପାଇଁ ସମସ୍ତ ଘଟଣାର ମୂଳ ସ୍ୱରୂପ ଯେଉଁ ନିୟମ ସମଗ୍ର ସୃଷ୍ଟିକୁ ପରିଚାଳିତ କରୁଛି ତାର ତତ୍ତ୍ୱ ଜାଣିବା ଦରକାର । ସେହି

ନିୟମର ଆଲୋକରେ ଜୀବନ ପ୍ରବାହର ସମସ୍ତ କଳୁଷକୁ ସମୂଳେ ଧ୍ୱଂସ କରି ହେବ ।

ମ୍ୟାଡାମ ବ୍ଲାଭାଟ୍‌ସ୍କିଙ୍କ ଶିଷ୍ୟତ୍ୱ ସ୍ୱୀକାର କରିବା ପରେ ପରେ ସେ ମହାତ୍ମା ମୋରିୟାଙ୍କର ପ୍ରତ୍ୟକ୍ଷ ସମ୍ପର୍କରେ ଆସିଥିଲେ । ମହତ୍ମା ମୋରିୟା ବ୍ରହ୍ମବିଦ୍ୟା ସମିତି ପ୍ରତିଷ୍ଠାତା ଦୁଇଜଣ ମହାତ୍ମାଙ୍କ ମଧ୍ୟରୁ ଜଣେ । ତାଙ୍କ ସମ୍ପର୍କରେ ଆସିବା ପରେ ଶ୍ରୀମତୀ ବେଶାନ୍ତ ଜାଣିଲେ ଯେ ଗତ ଦୁଇଟି ସଙ୍କଟ କାଳରେ ଏହି ମହାତ୍ମାଙ୍କ ବାଣୀ ତାଙ୍କୁ ରକ୍ଷା କରିଥିଲା ।

ବ୍ରହ୍ମବିଦ୍ୟା କ୍ଷେତ୍ରରେ ତାଙ୍କ ଦାନ ଅତୁଳନୀୟ । ସେ ବକ୍ତୃତା ଦେବା ଓ ଗ୍ରନ୍ଥ ରଚନା କରିବା ଦିଗରେ କଳ୍ପନାତୀତ ଭାବରେ ଦକ୍ଷତା ହାସଲ କରିଥିଲେ । ବ୍ରହ୍ମବିଦ୍ୟା ସମିତିର ପ୍ରତିଷ୍ଠାତା ସଭାପତି କର୍ଣ୍ଣେଲ ହେନେରି ଷ୍ଟିଲ ଓଲକଟଙ୍କ ପରେ ୧୯୦୭ ମସିହାରେ ଉକ୍ତ ସମିତିର ସଭାନେତ୍ରୀ ଭାବରେ ନିର୍ବାଚିତ ହୋଇ ଜଣେ ଅଭିଜ୍ଞ ସଂଗଠକ ଭାବରେ ବ୍ରହ୍ମବିଦ୍ୟା ସମିତିକୁ କର୍ମାଭିମୁଖୀ କରିଥିଲେ । ତାଙ୍କର ଡାକରା ଥିଲା କର୍ମ । ସେ ସଭାନେତ୍ରୀ ଥିବା ସମୟରେ ସାରା ପୃଥିବୀ ପର୍ଯ୍ୟଟନ କରି ୩୬ଟି ଦେଶରେ ବ୍ରହ୍ମବିଦ୍ୟା ସମିତିର ନୂତନ ଶାଖାମାନ ପ୍ରତିଷ୍ଠା କରିଥିଲେ । ସେ ସମୟର ଅନେକ ସମାଜ ସଂସ୍କାର ମୂଳକ କାର୍ଯ୍ୟରେ ତାଙ୍କର ସହଯୋଗ ରହିଥିଲା ।

ସେ ତାଙ୍କର ଦିବ୍ୟ ଦୃଷ୍ଟି ବଳରେ ଜାଣି ପାରିଥିଲେ ଯେ ସେ ପୂର୍ବ ଜନ୍ମରେ ଜଣେ ଭାରତୀୟା ଥିଲେ । ସେ ଭାରତକୁ ଆସି ତାର ସେବା କରିବା ପାଇଁ ସ୍ଥିର କଲେ । ୧୮୯୩ ମସିହା ନଭେମ୍ବର ତା ୧୬ ତାରିଖ ଦିନ ଆନି ବେଶାନ୍ତ ଭାରତରେ ପଦାର୍ପଣ କରିଥିଲେ । ଏଥି ପୂର୍ବରୁ ୧୮୭୫ ରେ ସେ 'ଇଂଲଣ୍ଡ, ଭାରତ ଓ ଆଫଗାନୀସ୍ଥାନ' ନାମକ ପୁସ୍ତକରେ ଭାରତ ସପକ୍ଷରେ ଲେଖିଥିଲେ । ଭାରତର ଧର୍ମ ଜୀବନ, ବିଶେଷ କରି ହିନ୍ଦୁ ଧର୍ମ ବିଷୟରେ ସେ ଯେଉଁ ସବୁ ବ୍ୟାଖ୍ୟା ଦେଇଛନ୍ତି ତାହା ବାସ୍ତବିକ ବିସ୍ମୟକର । ସେ ନୂଆ ହୋଇ ଆସି, ସଂସ୍କୃତ ଭାଷା ନ ଜାଣି ପୁରାତନ ଭାରତୀୟ ଦର୍ଶନ ବିଷୟରେ ଯେଉଁ ଗଭୀର ଜ୍ଞାନ ପ୍ରକାଶ କରିଥିଲେ ସେଥିରେ ସନାତନ ଧର୍ମର ସୁପଣ୍ଡିତ ବ୍ୟକ୍ତିମାନେ ମଧ୍ୟ ବିସ୍ମିତ ହୋଇଥିଲେ । ଧର୍ମ ବିଷୟକ ତଥ୍ୟ ସାଙ୍ଗକୁ ଭାରତରେ ଲୋପ ପାଇ ଯାଇ ଥିବା ମହାନତା ପ୍ରତି ଶ୍ରଦ୍ଧା ଓ ତତ୍‌କାଳୀନ ଭାରତୀୟ ଶିକ୍ଷିତ ସମାଜର ହୀନମନ୍ୟତା ପ୍ରତି ଅସୂୟା ତାଙ୍କର ପ୍ରତ୍ୟେକ

ଭାଷଣରେ ଉଦ୍‌ଘୋଷିତ ହେଉଥିଲା । ସେ ଯେତେବେଳେ ତାଙ୍କ ଭାଷଣରେ ଭାରତର ଉଜ୍ଜ୍ୱଳ ଭବିଷ୍ୟତ ବିଷୟରେ ବର୍ଣ୍ଣନା କରି ଯାଉଥିଲେ, ସେତେବେଳେ ଶ୍ରୋତାମାନଙ୍କ ଚକ୍ଷୁ ଆନନ୍ଦାଶ୍ରୁରେ ଛଳଛଳ ହୋଇ ଯାଉଥିଲା ।

ଭାରତର ଶିକ୍ଷା କ୍ଷେତ୍ରରେ ତାଙ୍କର ଅବଦାନ ସାମାନ୍ୟ ନୁହେଁ । ୧୮୮୯ ମସିହାରେ ଭାରତର ଅଭ୍ୟୁଦୟ ନିମନ୍ତେ କାମ କରିବା ପାଇଁ କେତେକ ଲୋକଙ୍କୁ ଏକତ୍ରିତ କଲେ । ଭାରତ ପାଇଁ ଗୋଟିଏ ଶିକ୍ଷା ଯୋଜନା କରି ପ୍ରଥମେ ବନାରସଠାରେ କେନ୍ଦ୍ରୀୟ ହିନ୍ଦୁ କଲେଜ ସ୍ଥାପନ କଲେ । ଇଂଲଣ୍ଡ ଓ ଆମେରିକାରୁ ବ୍ରହ୍ମବିଦ୍ୟା ଅନୁରାଗୀ ବ୍ୟକ୍ତିମାନେ ଆସି ସେ କଲେଜରେ କାମ କଲେ । ସେମାନଙ୍କ ମଧ୍ୟରେ ଡା. ଏ . ରିଚାର୍ଡସନ, ପି.ଏଚ.ଡି ଓ ଜି.ଏସ, ଅରୁଣ୍ଡେଲ ମୁଖ୍ୟ ଥିଲେ । ଡା. ରିଚାର୍ଡସନ କଲେଜର ପ୍ରଥମ ପ୍ରିନ୍ସିପାଲ ଥିଲେ । ଯେଉଁ ପ୍ରତିଭାବାନ ଭାରତୀୟ କର୍ମୀମାନେ କେନ୍ଦ୍ରୀୟ ହିନ୍ଦୁ କଲେଜରେ ତାଙ୍କ ସହିତ କାର୍ଯ୍ୟ କରିବା ପାଇଁ ଆସି ଏକତ୍ରିତ ହେଲେ, ସେମାନେ ଭାରତୀୟ ଶିକ୍ଷାର ଗୋଟିଏ ମୂଳ ରୂପରେଖ ପକାଇ ଦେଇଥିଲେ । ତାହାରି ଉପରେ ଭାରତର ସମଗ୍ର ଶିକ୍ଷା ପଦ୍ଧତି ଆଜି ବି ଦଣ୍ଡାୟମାନ । ଭାରତୀୟ ଶିକ୍ଷକମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ହେଉଛନ୍ତି ଭାରତରତ୍ନ ଭଗବାନ ଦାସ, ଗୋବିନ୍ଦ ଦାସ, ଜ୍ଞାନୀନ୍ଦ୍ରନାଥ ଚକ୍ରବର୍ତ୍ତୀ ଓ ଉପେନ୍ଦ୍ର ନାଥ ବସୁ । ଏମାନେ ସମସ୍ତେ ଶ୍ରୀମତୀ ବେଶାନ୍ତଙ୍କ ପ୍ରେରଣାରେ ଅବୈତନିକ ଶିକ୍ଷକ ଭାବରେ କାମ କରୁଥିଲେ । ପରବର୍ତ୍ତୀ କାଳରେ ପଣ୍ଡିତ ମଦନ ମୋହନ ମାଳବ୍ୟ ଯେତେବେଳେ ଏହାର ଭାରନେଇ ଏହାକୁ ବିଶ୍ୱ ବିଦ୍ୟାଳୟରେ ପରିଣତ କଲେ ସେତେବେଳେ ଶ୍ରୀମତୀ ବେଶାନ୍ତଙ୍କ କୃତିତ୍ୱ ପ୍ରତି ସମ୍ମାନ ଦେଖାଇ ତାଙ୍କୁ ପରିଚାଳନା ସଂସ୍ଥାର ସଭ୍ୟା ପଦରେ ରଖିଥିଲେ ଏବଂ ସମ୍ମାନ ସୂଚକ ପି.ଏଚ.ଡି ଉପାଧି ପ୍ରଦାନ କରିଥିଲେ । ଯେତେବେଳେ ବିଶ୍ୱବିଦ୍ୟାଳୟ ପାଇଁ ତାଙ୍କର ସାହାଯ୍ୟ ଆଉ ଦରକାର ନ ପଡ଼ିଲା, ସେ ବ୍ରହ୍ମବିଦ୍ୟା ସମିତିର ଏକ ଶିକ୍ଷା ପାଣ୍ଠି ଗଢ଼ି ଅନେକ ଶିକ୍ଷାନୁଷ୍ଠାନ ସ୍ଥାପନ କରିଥିଲେ । ପରବର୍ତ୍ତୀ କାଳରେ ଏହା ଜାତୀୟ ଶିକ୍ଷା ଉନ୍ନୟନ ସଂସ୍ଥାରେ ପରିଣତ ହୋଇ ସାରା ଭାରତରେ ଶିକ୍ଷା ପ୍ରସାର କଳ୍ପେ ନିୟୋଜିତ ହୋଇଥିଲା ।

ଡାକ୍ତର ବେଶାନ୍ତ ଭାରତର ବାଳକ ବାଳିକାମାନଙ୍କ ଚାରିତ୍ରିକ ଉନ୍ନତି ପାଇଁ ଅନେକ ଗୁଡ଼ିଏ ସଂଗଠନ କରିଥିଲେ । ସେ 'ଭାରତର ସନ୍ତାନ ସନ୍ତତି' ନାମକ ଗୋଟିଏ ଜାତୀୟ ଆନ୍ଦୋଳନ କରିଥିଲେ ଆନ୍ତର୍ଜାତିକ ସ୍ତରରେ ବାଳକ ବାଳିକାମାନଙ୍କ ପାଇଁ 'ସୁବର୍ଣ୍ଣ ଶୃଙ୍ଖଳ' (Golden Chain) ନାମକ ସଂଗଠନ କରିଥିଲେ । ତାହା ବହୁ ଦିନ ପର୍ଯ୍ୟନ୍ତ ଭାରତ, ସ୍କଟଲାଣ୍ଡ, ସ୍ପେନ, ଆମେରିକା ଓ କେତେକ ଦକ୍ଷିଣ ଆମେରିକା ରାଜ୍ୟମାନଙ୍କରେ ପ୍ରଚଳିତ ଥିଲା । ୧୯୧୮ ମସିହାରେ ସେ ଭାରତରେ ବୟସ୍କାଉଟ ସଂଗଠନ ଗଢ଼ି ଥିଲେ । ପିଲାମାନେ ଭାରତୀୟତା ଦୃଷ୍ଟିରୁ ମୁଣ୍ଡରେ ପଗଡ଼ି ପିନ୍ଧୁଥିଲେ ଓ ଭାରତୀୟ ସଂଗୀତ ଗାନ କରୁଥିଲେ । ପରେ ଏହି ସଂଗଠନ ଲର୍ଡ ବେଡେନ ପାଓ୍ୱେଲଙ୍କ ସ୍କାଉଟ ସଙ୍ଗଠନ ସହ ମିଳିତ ହୋଇଥିଲା ଓ ସେ ଭାରତ ପାଇଁ ଅବୈତନିକ ସ୍କାଉଟ କମିଶନର ହୋଇଥିଲେ ।

ଡା: ବେଶାନ୍ତଙ୍କ ଜୀବନରେ ଆଉ ଗୋଟିଏ ପରିବର୍ତ୍ତନ ଆସିଲା ସେ ଯେତେବେଳେ ବାଳକ ଜେ: କୃଷ୍ଣମୂର୍ତ୍ତିଙ୍କୁ ଭବିଷ୍ୟତରେ ଏକ ବିଶ୍ୱଗୁରୁ ହେବେ ବୋଲି ଆବିଷ୍କାର କରି ନିଜର ପୁଅ ଭାବରେ ପାଳନ କଲେ । କୃଷ୍ଣମୂର୍ତ୍ତିଙ୍କ ପିତାମାତା ପ୍ରଥମେ ପୁଅର ଭାର ଡା: ବେଶାନ୍ତଙ୍କ ଉପରେ ଛାଡ଼ି ଦେଇଥିଲେ । କିନ୍ତୁ ପରେ ପର କଥାରେ ପଡ଼ି ବିବାଦ କରି ପୁଅକୁ ନେଇ ଯିବାକୁ ଚାହିଁଲେ । ବାଳକ କୃଷ୍ଣମୂର୍ତ୍ତି ଏପରି ନିବିଡ଼ ଭାବରେ ଡା: ବେଶାନ୍ତଙ୍କ ସ୍ନେହରେ ବାନ୍ଧି ହୋଇ ଯାଇଥିଲେ ଯେ ତାଙ୍କ ବାପା ମାଆଙ୍କ ପାଖକୁ ଯିବାକୁ ମଙ୍ଗିଲେ ନାହିଁ । ତେଣୁ ମକଦ୍ଦମା ହେଲା । ଡା: ବେଶାନ୍ତ ନିଜ ତରଫରୁ ଲଢ଼ିଲେ । ତଳ କୋର୍ଟରେ ହାରି ଯାଇଥିଲେ ସୁଦ୍ଧା ପ୍ରିଭି କାଉନ୍‌ସିଲରେ ଜିଣିଲେ । ଜେ: କୃଷ୍ଣମୂର୍ତ୍ତି ପ୍ରତିଭାବାନ ଶିକ୍ଷକ ଭାବରେ ବିକାଶ ଲାଭ କଲେ । କିନ୍ତୁ ବ୍ରହ୍ମବିଦ୍ୟା ସମିତିର ଅଧିକାଂଶ ମୁଖ୍ୟ କର୍ତ୍ତାମାନଙ୍କ ମତ ସହିତ ତାଙ୍କ ମତ ମେଳ ଖାଇଲା ନାହିଁ । ସେଥିପାଇଁ ସେ ବ୍ରହ୍ମବିଦ୍ୟା ସମିତି ଛାଡ଼ି ଦେଲେ । ସେ ସାରା ବିଶ୍ୱରେ କ୍ରିଷ୍ଣାଜୀ ନାମରେ ବିଦିତ ତତ୍ତ୍ୱଜ୍ଞାନର ମହାନ ଶିକ୍ଷକ ଭାବରେ ପ୍ରତିଷ୍ଠା ଲାଭ କଲେ । ସେ ୧୯୮୬ ମସିହା ଫେବୃୟାରି ମାସ ତା ୧୭ ତାରିଖ ଦିନ ଇହଧାମ ତ୍ୟାଗ କଲେ । ଭାରତ ଓ ଅନ୍ୟ କେତେଗୁଡ଼ିଏ ଦେଶରେ ତାଙ୍କ ସଂଗଠନ 'କୃଷ୍ଣମୂର୍ତ୍ତି ଫାଉଣ୍ଡେସନ'ର ଶାଖାମାନ ତାଙ୍କର ବାଣୀ ପ୍ରଚାର କରୁଛନ୍ତି ଓ ଶିକ୍ଷା ଅନୁଷ୍ଠାନମାନ ଚଳାଉଛନ୍ତି ।

ବହୁ ଦୃଷ୍ଟିରୁ ଡା: ବେଶାନ୍ତ ଭାରତୀୟ ସ୍ୱାଧୀନତା ଆନ୍ଦୋଳନର ମଧ୍ୟ ଅଗ୍ରଣୀ ଥିଲେ । ସେ ୧୯୧୩ ମସିହାରେ ସକ୍ରିୟ ଭାବରେ ରାଜନୀତିରେ ଯୋଗ ଦେଲେ । ୧୯୧୪ ମସିହାରେ ସେ The Common Weal ନାମକ ପତ୍ରିକା ପ୍ରକାଶ ଆରମ୍ଭ କଲେ । କେତେ ମାସ ପରେ Madras Standard ପତ୍ରିକାଟି କିଣିଲେ । ତାହାକୁ New India ନାମରେ ନାମିତ କରି ପ୍ରକାଶ କଲେ । ଭାରତରେ ସେ ପ୍ରଥମେ ଲଣ୍ଡନରେ ପ୍ରକାଶିତ ପତ୍ରିକାମାନଙ୍କ ସମକକ୍ଷ ବଳିଷ୍ଠ, ଦୃଢ଼ ଓ ବିଷୟ ପ୍ରତିଷ୍ଠ ସମାଲୋଚନା ଧାରା ପ୍ରଚଳନ କରିଥିଲେ । ତାଙ୍କ ପତ୍ରିକାରେ କୌଣସି ବ୍ୟକ୍ତି ବିଶେଷ ପ୍ରତି ଆକ୍ଷେପ ମୂଳକ ସମାଲୋଚନା ସ୍ଥାନ ପାଉ ନଥିଲା ।

ଏଥି ପୂର୍ବରୁ ୧୯୦୭ ମସିହାରେ ସୁରାଟରେ ଅନୁଷ୍ଠିତ ଭାରତୀୟ କଂଗ୍ରେସ ଅଧିବେଶନରେ କଂଗ୍ରେସର ଦୁଇଟି ଶାଖା ମଧ୍ୟରେ ଦେଖା ଦେଇଥିବା ବିବାଦ ମେଣ୍ଟାଇ ସେମାନଙ୍କ ମଧ୍ୟରେ ଏକତା ରକ୍ଷା କରିବାକୁ ସେ ସକ୍ଷମ ହୋଇଥିଲେ । ପ୍ରଥମ ବିଶ୍ୱଯୁଦ୍ଧ ସମୟରେ ତତ୍କାଳୀନ ଇଂରେଜ ଶାସକ ଅନ୍ୟ ଅନୁଗତ ଦେଶମାନଙ୍କୁ ଯୁଦ୍ଧରେ ସାହାଯ୍ୟ ମାଗିବା ବେଳେ କହୁଥିଲେ ଯେ ଯୁଦ୍ଧରେ ଜୟ ଲାଭ ହେବା ପରେ ସେମାନଙ୍କ ସହିତ ଥିବା ସମ୍ପର୍କ ସମ୍ବନ୍ଧରେ ନୂତନ ମୀମାଂସା ହେବ । କିନ୍ତୁ ଭାରତକୁ କୌଣସି ପ୍ରତିଶ୍ରୁତି ବିନା ଯୁଦ୍ଧରେ ସାହାଯ୍ୟ କରିବାକୁ ନିର୍ଦ୍ଦେଶ ଦେଲେ । ସେଥିପାଇଁ ଡାକ୍ତର ବେଶାନ୍ତ କଂଗ୍ରେସର ଆନ୍ଦୋଳନ ଚାଲୁ ରଖିବାକୁ ନିର୍ଦ୍ଦେଶ ଦେଲେ । ତାଙ୍କର ପ୍ରତିଭାପୂର୍ଣ୍ଣ ସଂଗଠନ ଶକ୍ତି କଂଗ୍ରେସକୁ ନୂଆ ରୂପ ନୂଆ ଶକ୍ତି ଦେଇ ଗଢ଼ି ତୋଳିଲା । ସେ କହୁଥିଲେ "ଲୁହା ତାତି ଥିବାବେଳେ ପାହାର ଦେଲେ କେବଳ ଚଳିବ ନାହିଁ, ଲୁହାକୁ ତତାଇବା ପାଇଁ ପାହାର ଦିଆଯାଉ ।" ତାଙ୍କ ଆନ୍ଦୋଳନର ଉଗ୍ରତା ଦେଖି ବମ୍ବେ ସରକାର ତାଙ୍କୁ ୧୯୧୬ ରେ ବମ୍ବେ ପ୍ରେସିଡେନ୍ସିରୁ ନିର୍ବାସନ ଦଣ୍ଡ ଦେଲେ । ମାନ୍ଦ୍ରାଜ ସରକାର କିନ୍ତୁ ତାଙ୍କୁ ସେ ବର୍ଷ ଜେଲ ଦଣ୍ଡ ଦେଲେ । ସେ ପ୍ରକୃତରେ ଆନ୍ଦୋଳନ କାରିଣୀ ନ ଥିଲେ ବରଂ ଦୂରଦୃଷ୍ଟି ସମ୍ପନ୍ନା ଦେଶପ୍ରାଣା ଥିଲେ । ତାଙ୍କର ମୁକ୍ତି ପାଇଁ ସାରା ପୃଥିବୀରେ ଏପରି ସ୍ୱର ଉଠିଲା ଯେ, ତାଙ୍କ ଜେଲ ଦଣ୍ଡର ମିଆଦ ପୂରିବା ପୂର୍ବରୁ ଇଂରେଜ ସରକାର ତାଙ୍କୁ ମୁକ୍ତି ଦେଲେ । ତା' ପରେ ପରେ ୧୯୧୭ ମସିହାରେ ସେ କଂଗ୍ରେସର ସଭାନେତ୍ରୀ ହେଲେ ।

କର୍ମ ଯୋଗିନୀ ଡା: ବେଶାନ୍ତ କଂଗ୍ରେସର ସଭାନେତ୍ରୀ ହୋଇ ନୂତନ ଦୃଷ୍ଟାନ୍ତ ସୃଷ୍ଟି କଲେ । ପୂର୍ବରୁ ସଭାପତିମାନେ କେବଳ ଚାରି ଦିନର ବାର୍ଷିକ ସମ୍ମିଳନୀରେ ସଭାପତିତ୍ୱ କରିବାପରେ ନିଷ୍କ୍ରିୟ ରହୁଥିଲେ । କିନ୍ତୁ ଡା: ବେଶାନ୍ତ ଏହାକୁ କର୍ମ ଚଞ୍ଚଳ କରି ତୋଳିଲେ । ସେ କମିଟି ବୈଠକମାନଙ୍କରେ କେବଳ ସଭାପତିତ୍ୱ କରୁ ନଥିଲେ, ଦେଶର ଚାରି ଆଡେ ବୁଲି ବୁଲି କଂଗ୍ରେସର ସଂଗଠନ କାର୍ଯ୍ୟରେ ଲାଗି ଯାଉଥିଲେ । କିନ୍ତୁ ତିନି ବର୍ଷ ପରେ ଯେତେ ବେଳେ କଂଗ୍ରେସ ଅସହଯୋଗ ଆନ୍ଦୋଳନ କରିବା ସିଦ୍ଧାନ୍ତ ଗ୍ରହଣ କଲା, ସେ କଂଗ୍ରେସର ନେତୃତ୍ୱ ତ୍ୟାଗ କଲେ । ଡା: ବେଶାନ୍ତ ନିଷ୍କ୍ରିୟ ବିରୋଧରେ (Pasaive resistance) ବିଶ୍ୱାସ କରୁଥିଲେ । କୌଣସି ଏକ ଅମଙ୍ଗଳକର ନିୟମ ଭଙ୍ଗ କରି, ସେଥିପାଇଁ ବ୍ୟକ୍ତିଗତ ଭାବରେ କଷ୍ଟ ସହ୍ୟ କରି, ଏକ ନୂତନ ମଙ୍ଗଳ କାରକ ନିୟମ ପ୍ରଣୟନ ପାଇଁ ସରକାରଙ୍କୁ ବାଧ କରିବା ବିଷୟରେ ଆନ୍ଦୋଳନ କରିବାକୁ ସେ କୁଣ୍ଠିତା ନଥିଲେ । କେବଳ ସରକାରଙ୍କ ଉପରେ ଚାପା ପକାଇବାପାଇଁ ଏକ ଯଥାର୍ଥ ଓ ମଙ୍ଗଳକର ଆଇନକୁ ଅମାନ୍ୟ କରିବାକୁ ଆନ୍ଦୋଳନ କରିବା ସପକ୍ଷରେ ସେ ନଥିଲେ । ବିଶ୍ୱଭ୍ରାତୃତ୍ୱରେ ତାଙ୍କର ଅଟଳ ନିଷ୍ଠାଥିଲା ଓ ବିଶ୍ୱର ନିୟମ ସ୍ୱରୂପରେ ଈଶ୍ୱରଙ୍କ ସ୍ଥିତିରେ ସେ ବିଶ୍ୱାସ କରୁଥିଲେ । ପରଂବ୍ରହ୍ମଙ୍କୁ ଅପରିବର୍ତ୍ତନୀୟ ବିଶ୍ୱର ନିୟମ ଭାବରେ ଦେଖୁଥିବା, ବିଶ୍ୱାସ କରୁଥିବା ତାଙ୍କ ନିଷ୍ଠାପର ସାଧକ ଜୀବନ ଏପରି ଏକ ଆଇନ ଅମାନ୍ୟ ଆନ୍ଦୋଳନ କଳ୍ପନା କରି ପାରନ୍ତା କିପରି ? ସେ ନେତୃତ୍ୱରୁ ଗଲେ ମଧ ଭାରତର କଲ୍ୟାଣ ପାଇଁ କାମ କରିବାରୁ ସେ ବିରତ ହୋଇ ନଥିଲେ । ତାଙ୍କର ସମସ୍ତ ଆନ୍ଦୋଳନ ଭାରତର କଲ୍ୟାଣ ପାଇଁ ଉଦ୍ଦିଷ୍ଟ ଥିଲା । ସେଥିରେ ତାଙ୍କର ଉଚ୍ଚାଭିଳାଷ ନଥିଲା କିମ୍ବା କାହାରି ବିରୁଦ୍ଧାଚରଣ କରିବା ଉଦ୍ଦେଶ୍ୟ ନଥିଲା । ସେଥିପାଇଁ ସେ ତାଙ୍କ ନୀତିରେ ଅଟଳ ଥିଲେ ।

ଶ୍ରୀମତୀ ବେଶାନ୍ତ ତାଙ୍କ ନିଜ ବିଶ୍ୱାସ ଅନୁରୂପ 'ହୋମରୁଲ' ଆନ୍ଦୋଳନ ଚାଲୁ ରଖିଥିଲେ ଓ ସେଥିପାଇଁ ତାଙ୍କର ଲୋକ ପ୍ରିୟତା କିଛି ପରିମାଣରେ ହରାଇଥିଲେ । କିନ୍ତୁ ସେ କୃତିତ୍ୱରେ ଯେପରି ଦୀପ୍ତିମତୀ ଥିଲେ ପରାଜୟରେ ମଧ ସେହିପରି ମହୀୟସୀ ଥିଲେ । ସେ ଶେଷ ଜୀବନରେ ପ୍ରାୟ ଏକାକିନୀ ହୋଇ ଯାଇଥିଲେ । ଜଣେ ଜିଜ୍ଞାସା କରିଥିଲେ "ଆପଣ ଏ

ଅବସ୍ଥାରେ କିପରି ଏତେ ଶାନ୍ତ ଓ ଆନନ୍ଦିତ ରହି ପାରୁଛନ୍ତି ?'' ସେ କହି ଥିଲେ - ''ଜୀବନରେ ଅକୃତକାର୍ଯ୍ୟତା ସହ୍ୟ କରି ଚଳିବାକୁ ହେବ ତାହା ମଧ୍ୟ ଶିଖିବା ଦରକାର ।''

ସାଧାରଣ ଲୋକଙ୍କୁ ବାହାରେ ଅଜଣା କିନ୍ତୁ ତାଙ୍କ ବ୍ୟକ୍ତିଗତ ଜୀବନର ଅତି ମୂଲ୍ୟବାନ ଦିଗ ବିଷୟରେ ନ କହିଲେ କଥା ଅପୂର୍ଣ୍ଣ ରହିଯିବ । ଯେଉଁମାନେ ମହାତ୍ମାମାନଙ୍କ ତତ୍ତ୍ୱାବଧାନରେ ଆଧ୍ୟାତ୍ମିକ ସାଧନା କରୁଥିଲେ, ମ୍ୟାଡାମ ବ୍ଲାଭାଟ୍‌ସ୍କିଙ୍କ ତିରୋଧାନ ପରେ ସେମାନେ ତାଙ୍କ ସହିତ ମିଳିତ ହେଲେ । ସାରା ବିଶ୍ୱର ଏହି ଅନ୍ତରଙ୍ଗା ଗୋଷ୍ଠୀ ତାଙ୍କୁ ନିର୍ଦ୍ଦେଶିକା ଭାବରେ ଗ୍ରହଣ କରିଥିଲେ । ଯେଉଁମାନେ ତାଙ୍କର ଘନିଷ୍ଠ ସମ୍ପର୍କରେ ଆସିଛନ୍ତି, ସେମାନେ ଜାଣନ୍ତି ସେ ଯୋଗ ବିଦ୍ୟାରେ କେତେ ଉଚ୍ଚ ଅଧିକାରିଣୀ ଥିଲେ । ତାଙ୍କର ନିର୍ଦ୍ଦେଶଗୁଡ଼ିକ ସର୍ବଦା ପ୍ରତ୍ୟକ୍ଷ ଜ୍ଞାନ ଉପରେ ପ୍ରତିଷ୍ଠିତ ଥିଲା । ନିଜର ଦିବ୍ୟ ଦୃଷ୍ଟି ବଳରେ ଲାଭ କରି ଥିବା ଜ୍ଞାନ ବଳରେ ସେ ଯେଉଁ ସବୁ ନିର୍ଦ୍ଦେଶାବଳୀ ଦେଇଛନ୍ତି ତାହା ଏବେ ମଧ୍ୟ ଧ୍ରୁବ ତାରା ପରି ଆଧ୍ୟାତ୍ମିକ ଜୀବନର ପଥ ପ୍ରଦର୍ଶକ ହୋଇ ରହିଛି ।

ଉନବିଂଶ ଶତାବ୍ଦୀର ଶେଷ ଭାଗ ଓ ବିଂଶ ଶତାବ୍ଦୀର ଆରମ୍ଭରେ ଭାରତର ଅଭ୍ୟୁଦୟର ଯେଉଁ ଦିଗକୁ ଚାହିଁଲେ ଡା: ବେଶାନ୍ତଙ୍କ ଉଜ୍ଜ୍ୱଳ ରୂପ ଆଖି ଆଗରେ ଝଲସି ଉଠେ । ତାଙ୍କର କର୍ମ ଓ ବାଣୀ ତତ୍‌କାଳୀନ ସମାଜରେ ଆଶା, ଆଶ୍ୱାସନା ଓ ଦୃଢ଼ତା ଜାଗ୍ରତ କରାଇଥିଲା । ତାଙ୍କ ନୂତନ ଯୁଗ ଚେତନାର ଆହ୍ୱାନ ଭାରତୀୟ ପ୍ରାଣକୁ ଉଜ୍ଜୀବିତ କରିଥିଲା ଓ ହୀନ ମନ୍ୟତା ଦୂର କରିଥିଲା । ଭାରତରେ ସାମାଜିକ ଓ ରାଜନୈତିକ ପରିବର୍ତ୍ତନକୁ ବେଗଶୀଳ ଓ ବଳିଷ୍ଠ କରିଥିଲା । ତାଙ୍କର ଏକତା ଓ ଭ୍ରାତୃଭାବର ବାଣୀ ସାରା ବିଶ୍ୱରେ ଦେଶ ଓ ଦେଶ ଭିତରେ, ବର୍ଣ୍ଣ ବର୍ଣ୍ଣ ମଧ୍ୟରେ, ଧର୍ମ ଧର୍ମ ମଧ୍ୟରେ, ବିଶେଷ କରି ପାଶ୍ଚାତ୍ୟ ଓ ପ୍ରାଚ୍ୟ ଦେଶମାନଙ୍କ ମଧ୍ୟରେ ଭ୍ରାତୃତ୍ୱ ଓ ସହଯୋଗ ଏବଂ ନିଜ ନିଜ ମଧ୍ୟରେ ଏକତା ରକ୍ଷା କରିବା ପାଇଁ ଦୃଢ଼ ଗାଛିନୀ ହୋଇଥିଲା । ତାଙ୍କ ଚରିତ୍ରରେ ଥିଲା ଅମାପ ମହାନତା, ତାଙ୍କ ସ୍ୱପ୍ନରେ ଥିଲା ସମସ୍ତ ବିଶ୍ୱରେ ଏକ ଧର୍ମ ଏକ ବିଶ୍ୱ ବିଦ୍ୟାଳୟ, ଏକ ପାର୍ଲିଆମେଣ୍ଟ ପ୍ରତିଷ୍ଠା କରିବାର ମଧୁର ରୂପ, ହୃଦୟରେ ଥିଲା ଅସୀମ ମାତୃସ୍ନେହ ଯାହାର ସ୍ମରଣରେ ଆଜି ମଧ୍ୟ ମନ ପ୍ରସାରିତ ଓ ଉଦ୍‌ବୁଦ୍ଧ ହେଉଛି ।

ତାଙ୍କ ଜୀବନ କୃତିତ୍ୱ ଗାଥା ଯେ କୌଣସି ଏକ ଦେଶର ଇତିହାସଠାରୁ ପ୍ରଗଲ୍‌ଭତର । ତାଙ୍କର ଧାର୍ମିକ ଜୀବନ, ରାଜନୈତିକ ଦୂର ଦୃଷ୍ଟି, ଶିକ୍ଷାନୀତି, ସାଂଗଠନିକ ଦକ୍ଷତା, ଅସାମାନ୍ୟ ବାଗ୍ମୀତା ତାଙ୍କୁ ବିସ୍ମୟର ଅବତାର କରି ତୋଳିଛି । ତାଙ୍କୁ ଜର୍ଜ ବାର୍ଣ୍ଣାଡସ ମୁକ୍ତ କଣ୍ଠରେ ''ପୃଥିବୀର ଶ୍ରେଷ୍ଠ ନାରୀବକ୍ତା'' ଭାବରେ ସ୍ୱୀକାର କରି ଥିଲେ । ସରୋଜିନୀ ନାଇଡୁ କହିଛନ୍ତି - ''ତାଙ୍କର ତେଜୋମୟ ଶକ୍ତି ଭାରତର ବିଶ୍ୱାସକୁ ତାର ନିଜ ଆଦର୍ଶ ଓ ଭାଗ୍ୟ ବିଷୟରେ ପୁନଃ ପ୍ରଜ୍ୱଳିତ କଲା ।'' ମହାତ୍ମା ଗାନ୍ଧି କହିଛନ୍ତି - ''ଆନି ବେଶାନ୍ତ ଶୁପ୍ତ ଭାରତକୁ ଜଗାଇଥିଲେ ।'' ତାଙ୍କ ପ୍ରଶଂସାର ଅନ୍ତ ନାହିଁ ଯେପରି ତାଙ୍କ ଧିଷଣାର ସୀମା ନାହିଁ । ସେ ଥିଲେ ମହାନୁଭବା, ଗଢୁଥିଲେ ମଣିଷ । ସେ କିନ୍ତୁ ତାଙ୍କ ବିଷୟରେ କହିଛନ୍ତି - ସେ କେବଳ ସତ୍ୟର ଅନୁସରଣ କରିବା ପାଇଁ ଚେଷ୍ଟା କରିଛନ୍ତି । ଭାରତକୁ ଆସିବା ବହୁ ପୂର୍ବରୁ ସେ ଲେଖିଥିଲେ କବିତାଟିଏ ଯାହାର ମର୍ମାନୁବାଦ ଏହିପରି -

''ଯଦି ମୋହ ପାଇଁ ନ ମିଳେ ବନ୍ଧୁତା
ଥାଉ ସିଏ ଦୂରେ ଥାଉ,
ଯଦି ମଣିଷର ପ୍ରେମ ଛାଡ଼ି ଯିବ
ତେବେ ଛାଡ଼ି ଚାଲି ଯାଉ,
ମୁଁ ଯେଉଁ ସତ୍ୟର ଅନୁସରଣରେ
ରହିଛି ତା ପ୍ରତି ବିଶ୍ୱାସୀ ଥାଇ
କରିବି କିଛିଟା କାମ ତାହା ପାଇଁ
ଯେଉଁ ସଂସାରରେ ଅଛି ମୁଁ ରହି ।
ତା ଦେଖାଇଲା ପଥେ ଆସୁ ପଛେ ମରୁ
ବଞ୍ଚିତ କରାଉ ସବୁ ପ୍ରେମରୁ
ତଥାପି ତା ପଛେ ଥିବି ମୁଁ ଲଟକି
ଲୋଡ଼ା ନାହିଁ ମୋର କିଛି କାହିଁରୁ ।
ମୋ କବର ଶିଳା ପରେ ଲେଖି ଦେବ
ଆଶା ମୋ ଏତିକି ମାତ୍ର
''ସତ୍ୟାନୁସରଣେ ଚେଷ୍ଟା କରିଥିଲା''
ସେତିକି ଥିଲା ତା ଜୀବନ ବ୍ରତ ।''

# ଭୂମିକା

ମଣିଷର ଚେତନା ଓ ତାର ବାହନଗୁଡ଼ିକ, ମଣିଷ ଓ ସେ ପରିଧାନ କରୁଥିବା ପୋଷାକ କରି । କିନ୍ତୁ ଏ ବିଷୟରେ ବହୁ ଭ୍ରାନ୍ତି ମୂଳକ ଧାରଣା ରହିଛି । ସେଥିପାଇଁ ଆରମ୍ଭରୁ ଏ ବିଷୟରେ ଏ ପର୍ଯ୍ୟନ୍ତ ଜଣା ଥିବା କଥା ସବୁ ସରଳ ଭାବରେ ବ୍ରହ୍ମବିଦ୍ୟାର ଶିକ୍ଷାର୍ଥୀମାନଙ୍କୁ ଜଣାଇ ଦେବା ପ୍ରୟୋଜନ ମନେ କରୁଛି । ଆମେ ଅଧ୍ୟୟନଦ୍ୱାରା ଏପରି ଗୋଟିଏ ସ୍ତରରେ ଉପନୀତ ହୋଇ ପାରିଛୁଁ ଯେଉଁଠି ପୂର୍ବରୁ ଅଜ୍ଞାତ ବା ଅସ୍ପଷ୍ଟ ଥିବା ଅନେକ ଘଟଣା ସୁସ୍ପଷ୍ଟ ହୋଇ ଯାଇଛି । ପୂର୍ବରୁ ଯାହା ଅର୍ଥହୀନ ଜଣା ପଡୁଥିଲା ତାହା ନିର୍ଦ୍ଦିଷ୍ଟ ଭାବେ ଜଣା ପଡିଛି । ଅନେକ କଥା ଯାହା ସବୁ ଏ ପର୍ଯ୍ୟନ୍ତ କେବଳ ସମ୍ଭାବନା ବା ମତବାଦ ବୋଲି ଗୃହୀତ ହେଉଥିଲା ତାହା ପ୍ରତ୍ୟକ୍ଷ ଜ୍ଞାନର ବିଷୟ ହୋଇଛି । ସେଥିପାଇଁ ଜ୍ଞାନ ଲବ୍ଧ ବିଷୟଗୁଡ଼ିକ ସୁନିର୍ଦ୍ଦିଷ୍ଟ ପର୍ଯ୍ୟାୟ କ୍ରମରେ ଉପସ୍ଥାପନ କରିବା ସମ୍ଭବ ହୋଇ ପାରିଛି । ପରବର୍ତ୍ତୀ କାଳରେ ଯେଉଁ ଶିକ୍ଷାର୍ଥୀମାନେ ଅନୁଶୀଳନ ଶକ୍ତି ବିକାଶ କରି ପାରିବେ ସେମାନେ ଏହାକୁ ବାରମ୍ବାର ଅନୁଶୀଳନ କରି ପାରିବେ । କ୍ରମାଗତ ଭାବରେ ଅନୁଶୀଳନ କରି ପଦାର୍ଥ ବିଜ୍ଞାନବିଦ୍‌ମାନେ ଯେପରି ନିଶ୍ଚୟତା ସହିତ ତାଙ୍କର ଅନୁଶୀଳନ କରିଥିବା ବିଷୟରେ କହି ଥାଆନ୍ତି ସେହିପରି ବ୍ରହ୍ମବିଦ୍ୟା ଶିକ୍ଷାର୍ଥୀମାନେ ନିଶ୍ଚୟତା ସହିତ ସେମାନଙ୍କରମତ କହି ପାରିବେ । ପଦାର୍ଥ ବିଜ୍ଞାନବିଦ୍‌ମାନଙ୍କର ଯେପରି ଭ୍ରମରେ ପଡ଼ିବା ଆଶଙ୍କା ରହିଛି, ଆଧ୍ୟାତ୍ମ ବିଦ୍ୟା ଶିକ୍ଷାର୍ଥୀମାନେ ସେହିପରି ଭୁଲ କରିବା ସମ୍ଭାବନା ମଧ୍ୟ ରହିଛି । କାରଣ ଜ୍ଞାନର ପରିଧି ପ୍ରସାରିତ ହେବା ସଙ୍ଗେ ସଙ୍ଗେ ପୂର୍ବରୁ ଜଣାଥିବା ଘଟଣାଗୁଡ଼ିକ ଉପରେ ନୂତନ ଆଲୋକ ପଡେ । ତା' ଫଳରେ ସେମାନଙ୍କ ପାରସ୍ପରିକ ସମ୍ବନ୍ଧ ଅଧିକ ପରିଷ୍କାର ହୋଇଯାଏ । ଏପରିକି ବେଳେ ବେଳେ ଗବେଷକ ଦୃଷ୍ଟିରେ ସେମାନଙ୍କ ସ୍ୱରୂପ ବଦଳି ଯାଏ । ଯାହା ପୂର୍ବେ ସମ୍ପୂର୍ଣ୍ଣ ବୋଲି ଜଣା ଯାଉଥିଲା ତାହା ନୂତନ ଆଲୋକରେ ଅସମ୍ପୂର୍ଣ୍ଣ ବା ଆଂଶିକ ବୋଲି ପ୍ରମାଣିତ ହୋଇଯାଏ ।

ସୁତରାଂ ଏଥିରେ ଯେଉଁ ବିଷୟଗୁଡ଼ିକ ଦିଆଯାଉଛି ତାହା ଯେ ସମ୍ପୂର୍ଣ୍ଣ ରୂପେ ଅଭ୍ରାନ୍ତ ଏହା କେହି ଦାବୀ କରୁ ନାହିଁ । ବରଂ ଏହା କୁହାଯାଇପାରେ ଜଣେ ଶିକ୍ଷାର୍ଥୀ ତାର ସୀମିତ ଶକ୍ତିରେ ଅନୁଶୀଳନ ଦ୍ୱାରା ଯାହା କିଛି ଜ୍ଞାନ ଆହରଣ କରି ପାରିଛି ତାହା ପ୍ରମାଦ ଶୂନ୍ୟ ନ ହେଲେ ସୁଦ୍ଧା ଅନ୍ୟ ଶିକ୍ଷାର୍ଥୀମାନଙ୍କ ଜାଣିବା ପାଇଁ ପ୍ରକାଶ କରିଛି ।

ଏ ବିଷୟରେ ଅଧ୍ୟୟନ କରିବାକୁ ହେଲେ, ବିଶେଷତଃ ଜଣେ ଆଧୁନିକ ପାଠକ ପକ୍ଷରେ, ସର୍ବାଦୌ ଜୀବନ ପ୍ରତି ଥିବା ଆମର ଗତାନୁଗତିକ ଦୃଷ୍ଟି ଭଙ୍ଗୀରେ ପରିବର୍ତ୍ତନ ଦରକାର । ମନୁଷ୍ୟ ଓ ମନୁଷ୍ୟର ଆବାସ ଯେଉଁ ଦେହାବଳି ଏବଂ ସେମାନଙ୍କ ମଧ୍ୟରେ ଥିବା ପାର୍ଥକ୍ୟକୁ ପ୍ରାଞ୍ଜଳ ଭାବରେ ହୃଦୟଙ୍ଗମ କରିବା ଦରକାର । ଆମେ ଆମର ପରିହିତ ପୋଷାକ ସହିତ ନିଜକୁ ଅଭିନ୍ନ ଭାବରେ ଦେଖିବାରେ ଏତେ ଅଭ୍ୟସ୍ତ ଯେ ଶରୀରଗୁଡ଼ିକୁ ଆମଠାରୁ ଭିନ୍ନ ବୋଲି ଆଦୌ ଭାବି ପାରୁନାହୁଁ । ବର୍ତ୍ତମାନ ଆଲୋଚନା କରୁଥିବା ବିଷୟରେ ଯଥାର୍ଥ ଧାରଣା ଅର୍ଜନ କରିବାକୁ ହେଲେ ଏ ଦୃଷ୍ଟି ଭଙ୍ଗି ବଦଳାଇ ଆମେ ଓ ଆମର ପରିଧାନ ଭିତରେ ଯେଉଁ ଅଭେଦ ଚିନ୍ତା ତାକୁ ବର୍ଜନ କରିବାକୁ ହେବ । ବୁଝିବାକୁ ହେବ, ଏ ପରିଧାନ ଆମେ ପ୍ରୟୋଜନ ଅନୁସାରେ ବାରମ୍ବାର ଗ୍ରହଣ କରୁଛୁଁ ଓ ପରିତ୍ୟାଗ କରୁଛୁଁ । ଏହି ଶରୀରଗୁଡ଼ିକର ସାମୟିକ ସ୍ଥିତି ଅଛି । ପରିଧାନ କରିଥିବା ପୋଷାକକୁ ଆମେ ନିଜେ ବୋଲି କହିବା ଯେପରି ବିଚାରହୀନତା, ଶରୀର ସହିତ ନିଜକୁ ଅଭିନ୍ନ କଳ୍ପନା କରିବା ସେହିପରି ନିର୍ବୋଧତା । ଆମେ ଶରୀର ଉପରେ ନିର୍ଭରଶୀଳ ନୋହୁଁ, ବରଂ ଆମର ପ୍ରୟୋଜନ ଦୃଷ୍ଟିର ଶରୀରର ମଲ୍ୟ ନିରୂପିତ ହୋଇଥାଏ ।

ଆମେ ଯେଉଁ ବାହନରେ କିଛି କାଳ ପାଇଁ ଅବସ୍ଥାନ କରି କାର୍ଯ୍ୟ ନିର୍ବାହ କରୁଁ ତା ସହିତ ଆମର ଆତ୍ମା ଅର୍ଥାତ୍ ଚେତନାକୁ ଅଭିନ୍ନ ବୋଲି କଳ୍ପନା କରି ନେଉଁ । ଏଭଳି ସଦାସର୍ବଦା ଘଟୁଥିବା ଭ୍ରମଟି ଆମ ଦୃଷ୍ଟିରେ କ୍ଷମଣୀୟ ହୋଇଥାଏ । ଏହାର ଏକମାତ୍ର କାରଣ ହେଉଛି ଇହଲୋକରେ ଜାଗ୍ରତ ଚେତନା ସାଙ୍ଗରେ କିଛି ଅଂଶରେ ସ୍ୱପ୍ନ ଚେତନା ଏହି ଶରୀରରେ ଅବସ୍ଥାନ କରି କାର୍ଯ୍ୟ ସମ୍ପାଦନ କରୁ ଥାଆନ୍ତି । କିନ୍ତୁ ସାଧାରଣ ମନୁଷ୍ୟ ଦୃଷ୍ଟିରେ ସେ

ଗୁଡ଼ିକ ଶରୀରଠାରୁ ପୃଥକ ଜଣା ପଡ଼ନ୍ତି ନାହିଁ । ତଥାପି ପ୍ରକୃତ ଅବସ୍ଥାଟି ବିଚାରଶକ୍ତି ବଳରେ ଆମେ ବୁଝି ପାରିବା । ଆମର ଜୀବାତ୍ମା ଯେ ଏ ସବୁର ଅଧିକାରୀ ତାହା ଶିକ୍ଷା କରି ପାରବା । କିଛି ଦିନ ପରେ ଯେତେବେଳେ ଆମେ ଜୀବାତ୍ମାକୁ ଶରୀରରୁ ଅଲଗା କରି ବାହାରକୁ ନେଇ, ଏ ବାହନ ଅପେକ୍ଷା ବାହାରେ ପୂର୍ଣ୍ଣତର ଚେତନାରେ ବିରାଜିତ ରହି ପାରିବା ସେତେବେଳେ ଏହା ଆମର ଅଭିଜ୍ଞତା ଅନ୍ତର୍ଗତ ହୋଇ ଏକ ସାଧାରଣ ଘଟଣାରେ ପରିଣତ ହୋଇଯିବ । ''ଆମେ କୌଣସି ବିଷୟରେ ଶରୀର ଉପରେ ନିର୍ଭରଶୀଳ ନୁହେଁ'' ଏହି ଜ୍ଞାନ ଥରେ ଲାଭହୋଇ ସାରିଲା ପରେ ଆମର ସତ୍ତା (ଚେତନା) ସହିତ ଶରୀରକୁ ଅଭିନ୍ନ ବୋଧ କରିବା ଅସମ୍ଭବ ହେବ । ଅର୍ଥାତ୍ ଆଉ କେବେ ନିଜକୁ ନିଜର ପରିଧାନ ବା ଶରୀର ସହିତ ଅଭିନ୍ନ ଭାବିବା ଭଳି ଭୁଲ ହେବ ନାହିଁ ।

ଏଇ କଥାଟି ଯୁକ୍ତି ବିଚାର ବଳରେ ବୁଝିବା ସମସ୍ତଙ୍କ ଆୟତ୍ତ ଭିତରେ ଅଛି । ଆମର ସତ୍ତା, ଯାହାକି ପ୍ରକୃତ ମନୁଷ୍ୟ ଓ ତାର ଶରୀରମାନଙ୍କ ଭିତରେ ଥିବା ପାର୍ଥକ୍ୟ ବିଚାର କରିବାରେ ଆମେ ନିଜକୁ ଅଭ୍ୟସ୍ତ କରିପାରିବା । ଏତିକି କରିବା ପାଇଁ ମଧ, ସର୍ବସାଧାରଣ ଯେଉଁ ମାୟାରେ ଆବୃତ ଅଛନ୍ତି ତହିଁରୁ ବାହାରି ଆସି, ଜୀବନ ଓ ଜଗତ ପ୍ରତି ଥିବା ଦୃଷ୍ଟିଭଙ୍ଗିରେ ସମ୍ପୂର୍ଣ୍ଣ ପରିବର୍ତ୍ତନ ଆଣି, ଆମକୁ 'ପରିବର୍ତ୍ତନ ଓ ଅନିଶ୍ଚିତତା ପୂର୍ଣ୍ଣ ମରଣଶୀଳ ଜୀବନ' ବାହାରେ ଏକ ମହତ୍ତର ସ୍ଥାନରେ ନିଜକୁ ସ୍ଥାପନ କରି, ଶରୀର ଧାରଣ କରିଥିବା ଚେତନାକୁ ଯେଉଁ ଛୋଟ ଛୋଟ ଦୈନିକ ଜଞ୍ଜାଳଗୁଡ଼ିକ ଅତିମାତ୍ରାରେ ବିଚଳିତ କରିଥାଆନ୍ତି, ତାହାର ଊର୍ଦ୍ଧ୍ୱରେ ରହି ସଦା ପରିବର୍ତ୍ତନଶୀଳ ଓ ଅପେକ୍ଷାକୃତ ସ୍ଥାୟୀ ବିଷୟଗୁଡ଼ିକ ଭିତରେ ଯଥାର୍ଥ ଅନୁପାତ ରକ୍ଷାକରିବା ସଙ୍ଗେ ସଙ୍ଗେ ଇହଲୋକର ଅଥଳ ଅକୂଳ ସମୁଦ୍ର ମଧ୍ୟରେ ପ୍ରତ୍ୟେକଟି ଲହରୀ ଆଘାତରେ ଇତସ୍ତତ ବିକ୍ଷିପ୍ତ ବିଧୁର ନିମଜ୍ଜମାନ ବ୍ୟକ୍ତି ଏବଂ ପର୍ବତ ଉପରେ ଦଣ୍ଡାୟମାନ ଅନ୍ୟ ବ୍ୟକ୍ତି, ଯାହାର ନିମ୍ନ ଦେଶରେ ସମୁଦ୍ରର ତରଙ୍ଗମାଳା ନିଷ୍କ୍ରିୟଭାବରେ ଭାଙ୍ଗି ପଡୁଛନ୍ତି, ସେମାନଙ୍କ ଅବସ୍ଥା ଭିତରେ ଥିବା ପାର୍ଥକ୍ୟ ବୁଝିବାକୁ ହେବ ।

ମୋ ବିଚାରରେ ମଣିଷ ଅର୍ଥ ଏକ ଜୀବନ୍ତ, ସଚେତନ, ଚିନ୍ତନ କ୍ଷମ ଜୀବାତ୍ମାନାମକ ସତ୍ତା ଶରୀରାବଳି ଅର୍ଥ ବିଭିନ୍ନ ସଂପୁଟ ବା କୋଷ ଯହିଁରେ ଏହି ଜୀବାତ୍ମା ଆବୃତ । ପ୍ରତ୍ୟେକ ଶରୀର ଜୀବାତ୍ମାକୁ ବିଶ୍ୱର ଏକ ନିର୍ଦ୍ଦିଷ୍ଟ ସ୍ତରରେ କାର୍ଯ୍ୟ ସମ୍ପାଦନ କରିବା ଦକ୍ଷତା ଦେଇଥାଏ । କେହି ଜଣେ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବା ପାଇଁ ଚାହିଁଲେ ସ୍ଥଳ ପଥରେ ଗାଡ଼ି, ଜଳ ପଥରେ ଜାହାଜ ଓ ଆକାଶରେ ବ୍ୟୋମଯାନ ବ୍ୟବହାର କରିଥାଏ । ସ୍ଥାନରୁ ସ୍ଥାନାନ୍ତର ଗମନ କଲେ ମଧ୍ୟ ସେ ବ୍ୟବହାର କରୁଥିବା ଯାନଠାରୁ ସ୍ୱତନ୍ତ୍ର ରହିଥାଏ । ସେହିପରି ପ୍ରକୃତ ମଣିଷ ଯେଉଁ ଶରୀରରେ କାର୍ଯ୍ୟ କରୁ ନା କାହିଁକି ତାଠାରୁ ଅଲଗା ରହିଥାଏ । ଯେପରି ଗାଡ଼ି, ଜାହାଜ ଓ ବ୍ୟୋମଯାନର ଗଠନ ସାମଗ୍ରୀ ତଥା ବ୍ୟବସ୍ଥାମାନ ପରସ୍ପରଠାରୁ ପୃଥକ, ସେମାନଙ୍କ ଚଳାଚଳ ସ୍ତର ବିଶେଷରେ ସ୍ୱତନ୍ତ୍ର, ସେହିପରି କାର୍ଯ୍ୟ କ୍ଷେତ୍ରରେ ସ୍ତରଭେଦରେ ଶରୀରମାନଙ୍କର ଗଠନ ଭିନ୍ନ ହୋଇଥାଏ । କେଉଁଟି ଅନ୍ୟଠାରୁ ସ୍ଥୂଳତର ହେଲାବେଳକୁ, ଅନ୍ୟଟି ଆଉ ଗୋଟିକଠାରୁ ଅଳ୍ପକାଳସ୍ଥାୟୀ ତ ଅନ୍ୟ କେଉଁଟି ଅଳ୍ପ କ୍ଷମତା ସମ୍ପନ୍ନ । କିନ୍ତୁ ସବୁଗୁଡ଼ିକର ସାଧାରଣ ଗୁଣ ହେଉଛି, ମଣିଷ ତୁଳନାରେ ସେମାନେ ଅଳ୍ପକାଳସ୍ଥାୟୀ ତାର ଯନ୍ତ୍ର ସ୍ୱରୂପ, ତାର ଦାସ ଓ ତାର ପରିଧାନ ପରି । ସେମାନଙ୍କ ସ୍ୱଭାବ ଘେନି ସେମାନଙ୍କର କ୍ଷୟ ଓ ପୁନର୍ଗଠନ ହୋଇଥାଏ । ପ୍ରୟୋଜନର ପାର୍ଥକ୍ୟ ଓ ଶକ୍ତିର ଅଭିବୃଦ୍ଧି ଅନୁସାରେ ସେଗୁଡ଼ିକରେ ପରିବର୍ତ୍ତନ କରିହୁଏ । ଆମେ ସେ ଶରୀରଗୁଡ଼ିକୁ ନିମ୍ନତର ସ୍ତରରୁ ଆରମ୍ଭ କରି ଗୋଟିକ ପରେ ଗୋଟିଏ ଅଧ୍ୟୟନ କରିବା । ତା'ପରେ ସେଗୁଡ଼ିକ ଭିତରେ ରହି ଅଭିନୟ କରୁଥିବା ପ୍ରକୃତ ମଣିଷ ବା ଚେତନା କଥା ବିଚାର କରିବା ।



# ପାର୍ଥିବ ଶରୀର

ପାର୍ଥିବ ଶରୀରରେ ଦୁଇଟି ତତ୍ତ୍ୱ ରହିଛି । ଏହାକୁ ସଂସ୍କୃତରେ ସ୍ଥୂଳ ଶରୀର ଓ ଲିଙ୍ଗ ଶରୀର କହନ୍ତି । ଉଭୟ ଶରୀର ଏହି ପୃଥ୍ୱୀ ଲୋକରେ କାମ କରନ୍ତି ଏବଂ ଗୋଟିଏ ପାର୍ଥିବ ଜୀବନ କାଳ ପାଇଁ ପାର୍ଥିବ ପଦାର୍ଥରେ ତିଆରି ହୋଇ ଥାଆନ୍ତି । ମଣିଷ ମୃତ୍ୟୁ ପରେ ଯେତେବେଳେ ପ୍ରେତ ଲୋକକୁ ଚାଲିଯାଏ ଉଭୟ ଏକତ୍ର ପରିତ୍ୟକ୍ତ ହୋଇ ପାର୍ଥିବ ଜଗତରେ ମିଳେଇ ଯାଆନ୍ତି ।

ଏହି ଦୁଇ ତତ୍ତ୍ୱକୁ ଏକ ପାର୍ଥିବ ଶରୀର ବା ବାହନ ଶ୍ରେଣୀଭୁକ୍ତ କରିବାର ଆଉ ଏକ କାରଣ ଅଛି । ଆମେ ଯେ ପର୍ଯ୍ୟନ୍ତ ପାର୍ଥିବ ଜଗତ ବା ସ୍ତର ଅତିକ୍ରମ କରି ପାରିନାହୁଁ ଏଥିରୁ ଏକ ବା ଉଭୟ ଆମ ବ୍ୟବହାରରେ ଲାଗି ଥାଆନ୍ତି, ଉଭୟ ନିଜର ଗଠନ ଉପାଦାନରେ ପାର୍ଥିବ ଜଗତର ପଦାର୍ଥ ଅନ୍ତର୍ଗତ ଓ ତାର ପରିସୀମା ବାହାରକୁ ଯାଇ ପାରନ୍ତି ନାହିଁ । ସେମାନଙ୍କ ଭିତରେ କାର୍ଯ୍ୟ କରୁଥିବା ଚେତନା ଶକ୍ତି ପାର୍ଥିବ ସ୍ତରରେ ଆବଦ୍ଧ ଏବଂ ଏଠାକାର ଦେଶ କାଳ ନିୟମର ଅନୁବର୍ତ୍ତୀ । ଯଦିଓ ଏହି ଦୁଇ ଶରୀର ପୃଥକ ହେବା ଯୋଗ୍ୟ ତଥାପି ପାର୍ଥିବ ଜୀବନ କାଳ ମଧ୍ୟରେ ଏମାନେ କ୍ୱଚିତ ପୃଥକ ହୋଇ ଥାଆନ୍ତି । ଏମାନଙ୍କୁ ପୃଥକ କରିବା କଦାପି ସ୍ପୃହଣୀୟ ନୁହେଁ, ଯଦି କୁତ୍ରାପି ଘଟେ ତାହାକୁ ଏକ ରୋଗ ବା ଶରୀର ଗଠନର ବିଷମତା ରୂପେ ଗ୍ରହଣ କରାଯାଇଥାଏ ।

ଏ ଦୁଇଟି ତତ୍ତ୍ୱ ତାଙ୍କ ଗଠନକାରୀ ଉପାଦାନର ବିଶେଷତ୍ୱ ଯୋଗୁଁ ସ୍ଥୂଳ ଶରୀର ଓ ଇଥରୀୟ ଶରୀର ଭାବରେ ପୃଥକ ପୃଥକ ବାରି ହୁଅନ୍ତି । ଇଥରୀୟ ସାଧାରଣରେ ଆଖିକୁ ଦେଖାଯାଏ ନାହିଁ । ଏହି ଶରୀରଟି ଦୃଶ୍ୟମାନ ଶରୀରର ଠିକ୍ ଅନୁରୂପ; ଏପରିକି ଦାନାକୁ ଦାନା ସମାନ ଭାବରେ ମିଶିଯାଏ । ଶରୀରରେ ସମସ୍ତ କାର୍ଯ୍ୟର ମୂଳ ଉତ୍ସ ସ୍ୱରୂପ ବୈଦ୍ୟୁତିକ ଓ ପ୍ରାଣ ଶକ୍ତିମାନଙ୍କର ଏହା ସଂଚାର କ୍ଷେତ୍ର ଅଟେ । ଏହି ଇଥରୀୟ ଜାଆଁଳା ଶରୀରଟି ଏ ପର୍ଯ୍ୟନ୍ତ ''ଲିଙ୍ଗ ଶରୀର'' ବୋଲି ଅଭିହିତ । କେତେଗୁଡ଼ିଏ କାରଣରୁ ଏହି ସମ୍ପର୍କରେ ଲିଙ୍ଗ ଶରୀର ନାମଟି ବ୍ୟବହାର ନ କରିବା ଉଚିତ ବୋଧ ହେଉଛି । ଅତି ପୁରାତନ କାଳରୁ ହିନ୍ଦୁମାନଙ୍କ ପୁସ୍ତକରେ ''ଲିଙ୍ଗ ଶରୀର'' ଅନ୍ୟ ଏକ ଅର୍ଥରେ ବ୍ୟବହୃତ ହୋଇ ଆସୁଛି । ପ୍ରାଚ୍ୟ ସାହିତ୍ୟର ଶିକ୍ଷାର୍ଥୀମାନଙ୍କ ମଧ୍ୟରେ ଏହାର ଅର୍ଥ ସମ୍ପର୍କରେ ବହୁତ ଭ୍ରମ ଜନ୍ମିଥାଏ । ପ୍ରାଚ୍ୟରେ ହେଉ ବା ପାଶ୍ଚାତ୍ୟରେ ହେଉ, ଏହି ଶବ୍ଦର ନିର୍ଦ୍ଦିଷ୍ଟ ଅର୍ଥକୁ ମନୋମୁଖୀ ଭାବରେ ଅପପ୍ରୟୋଗ ନ କରିବା ପାଇଁ ଏହାକୁ ବର୍ଜନ କରିବା ଉଚିତ୍ । ମନୁଷ୍ୟ ଗଠନର ଉପବିଭାଗଗୁଡ଼ିକ ପାଇଁ ଇଂରାଜୀ ନାମଗୁଡ଼ିକ ବ୍ୟବହାର କଲେ ଆମର ପ୍ରାଥମିକ ସାହିତ୍ୟରେ ସଂସ୍କୃତ ଶବ୍ଦ ମାଳାର ଅର୍ଥ ବୁଝିବା ଭଳି ପ୍ରତିବନ୍ଧକ ରହିବ ନାହିଁ । ଉଦାହରଣ ସ୍ୱରୂପ Etheric double ବା 'ଇଥରୀୟ ଯମଜ' ନାମଟି ଆମ ସ୍ଥୂଳ ଶରୀରର ସୂକ୍ଷ୍ମ ଅଂଶର ପ୍ରକୃତି ଓ ଗଠନକୁ ଠିକ୍ ରୂପେ ବୁଝାଇ ପାରିବ । ନାମ ଦ୍ୱାରା ତାର ତାତ୍ପର୍ଯ୍ୟ ପ୍ରକାଶ ପାଉଥିବାରୁ ମନେ ରଖିବାକୁ ସହଜ ହେବ । ଏହା 'ଇଥରୀୟ' କାରଣ ଇଥରରେ ତିଆରି ଏବଂ 'ଯମଜ' କାରଣ ଏହା ସ୍ଥୂଳ ଶରୀରର ଅବିକଳ ନକଲ, କାୟାର ଛାୟା ପରି ।

ପାର୍ଥିବ ପଦାର୍ଥର ସାତଗୋଟି ଉପବିଭାଗ ବା ଅବସ୍ଥା ଅଛି । ଏଗୁଡ଼ିକୁ ପରସ୍ପରଠାରୁ ପୃଥକ କରିହୁଏ । ପ୍ରତ୍ୟେକ ଉପବିଭାଗରେ ଅଶେଷ ବିଧ ଗଠନ ସଂଯୋଗ (combinations) ରହିଛି । ଏହି ଉପବିଭାଗଗୁଡ଼ିକ ହେଲେ - କଠିନ, ତରଳ, ବାଷ୍ପ ଓ ଇଥର ସମ୍ବନ୍ଧୀୟ ଚାରିଗୋଟି ଅବସ୍ଥା । ଏଗୁଡ଼ିକ ପରସ୍ପରଠାରୁ ପୃଥକ, ଯେପରି ତରଳ ଓ କଠିନ ବାଷ୍ପଠାରୁ ପୃଥକ । ଏହି ସାତଗୋଟି ଉପବିଭାଗରୁ ଯେକୌଣସି ଗୋଟିକର ବସ୍ତୁ ଅନ୍ୟ

ଯେକୌଣସି ଅବସ୍ଥାରେ ପରିଣତ ହୋଇପାରିବ; ଯଦିଓ ସାଧାରଣ ତାପ ଓ ଚାପ ମଧ୍ୟରେ ସାଧାରଣ ସ୍ଥାୟୀ ଅବସ୍ଥାରେ ସେମାନେ ଆମେ କହୁଥିବା ଭଳି ପୃଥକ ଉପବିଭାଗଭୁକ୍ତ ହୋଇ ଥାଆନ୍ତି । ଉଦାହରଣ ସ୍ୱରୂପ - ସୁନାର ସାଧାରଣ ଅବସ୍ଥା କଠିନ, ଜଳର ତରଳ ଓ କ୍ଲୋରିନର ବାଷ୍ପୀୟ ଅଟେ । ମନୁଷ୍ୟର ପାର୍ଥିବ ଶରୀର ଉକ୍ତ ସାତଟି ଯାକ ଉପବିଭାଗର ପଦାର୍ଥରେ ତିଆରି । ସ୍ଥୂଳ ଶରୀର କଠିନ ତରଳ ଓ ବାଷ୍ପୀୟ ପଦାର୍ଥରେ ଗଠିତ ଏବଂ ଇଥରୀୟ ଯମଜଟି ଇଥରୀୟ ଚାରିଗୋଟି ଉପବିଭାଗୀୟ ପଦାର୍ଥରେ ଗଠିତ । ଏହି ଇଥରୀୟ ଉପବିଭାଗ ଗୁଡ଼ିକର ନାମ - ଇଥରୀୟ ୧ମ, ଇଥରୀୟ ୨ୟ, ଇଥରୀୟ ୩ୟ ଓ ଇଥରୀୟ ୪ର୍ଥ ।

ଯେତେବେଳେ ବ୍ରହ୍ମବିଦ୍ୟାର ଉଚ୍ଚତର ସତ୍ୟସବୁ ଲୋକମାନଙ୍କ ଆଗରେ ଉପସ୍ଥାପିତ କରାଯାଏ; ଲୋକେ ବରାବର ଗୋଟିଏ ଅଭିଯୋଗ କରିଥାଆନ୍ତି । ''ଏସବୁ କିପରି ମେଘାଚ୍ଛନ୍ନ ପରି ଲାଗୁଛି । ଆମେ କେଉଁଠାରୁ ଆରମ୍ଭ କରିବୁ ?'' ''କୁହାଯାଉଥିବା ସତ୍ୟକୁ ଆମେ ନିଜେ ପରୀକ୍ଷା କରି ଦେଖିବାକୁ ଚାହିଁଲେ କିପରି ଆରମ୍ଭ କରିବୁଁ ?'' ପ୍ରାରମ୍ଭିକ ପଦକ୍ଷେପ ଭାବରେ ଆମେ କ'ଣ କରିବୁଁ ?'' ବ୍ରହ୍ମବିଦ୍ୟାରେ ବିଜ୍ଞ ଲୋକମାନେ ଯେଉଁ ଭାଷା ଅନର୍ଗଳ ଭାବରେ କହନ୍ତି ତାହାର ଆଦ୍ୟ ବର୍ଣ୍ଣମାଳା କ'ଣ ?'' ''ଆମେ ଏ ସଂସାର ଭିତରେ ଥିବା ସାଧାରଣ ଲୋକ, ଏହି ସତ୍ୟଗୁଡ଼ିକୁ କହୁଥିବା ଲୋକ ମୁହଁରୁ ଶୁଣି ମାନି ନ ନେଇ, ଯଦି ନିଜେ ପରୀକ୍ଷା କରି ଦେଖିବାକୁ ଇଚ୍ଛା କରୁଁ ତେବେ କଣ ସବୁ କରିବୁଁ ?'' ମୁଁ ଏହି ସବୁ ପ୍ରଶ୍ନଗୁଡ଼ିକର ଉତ୍ତର ପରବର୍ତ୍ତୀ ପୃଷ୍ଠାମାନଙ୍କରେ ଦେବାପାଇଁ ଚେଷ୍ଟା କରୁଛି । ତଦ୍ୱାରା ଯେଉଁମାନେ ପ୍ରକୃତରେ ଆଗ୍ରହୀ ସେମାନେ ସର୍ବୋଦୌ କି ପ୍ରକାର ପ୍ରୟୋଗାତ୍ମକ ପଦକ୍ଷେପ ନେବେ ତାହା ଜାଣିପାରିବେ । କିନ୍ତୁ ସର୍ବଦା ମନେରଖିବାକୁ ହେବ, ସେହି ପଦକ୍ଷେପଗୁଡ଼ିକ ଗୋଟିଏ ଜୀବାତ୍ମାର ଏବଂ ତାହାର ନୈତିକ, ମାନସିକ ଓ ଆଧ୍ୟାତ୍ମିକ ଅଂଶଗୁଡ଼ିକ ମଧ୍ୟ ଏହି ତାଲିମର ଅନ୍ତର୍ଭୁକ୍ତ । କେବଳ ପାର୍ଥିବ ଶରୀରରେ ଲୋକ ସାଧୁ ସନ୍ଥ ପାଲଟି ଯିବ ନାହିଁ । କିନ୍ତୁ ଏହା ମଧ୍ୟ ସତ୍ୟ ଯେ ପାର୍ଥିବ ଶରୀର ଗୋଟିଏ ଯନ୍ତ୍ର, ତାକୁ ଆମକୁ ବ୍ୟବହାର କରିବାକୁ ପଡ଼ିବ । ଗୋଟିଏ ମାର୍ଗ ଅନୁସରଣ କରିବାକୁ ପାଦ ଉଠାଇଲେ ଏହି ଶରୀରର

କେତେକ ଆବଶ୍ୟକ ଚର୍ଯ୍ୟା କରିବାକୁ ପଡ଼ିବ । କିନ୍ତୁ କେବଳ ପାର୍ଥିବ ଶରୀର ଚର୍ଯ୍ୟା ଯେପରି ଆମକୁ ସାଧନାର ଉଚ୍ଚତମ ଶିଖରକୁ ଉଠାଇ ନେଇ ପାରିବ ନାହିଁ, ସେହିପରି ଏହି ଶରୀରକୁ ତୁଚ୍ଛ ବୋଲି ଛାଡ଼ି ଦେଲେ ଉଚ୍ଚତର ସ୍ତରକୁ ଉଠିବା ମଧ୍ୟ ସମ୍ଭବ ହେବ ନାହିଁ ।

ମନୁଷ୍ୟ ଯେଉଁ ଶରୀରଗୁଡ଼ିକରେ ରହିଛି ଓ କାମ କରୁଛି ସେଗୁଡ଼ିକ ମନୁଷ୍ୟର ଯନ୍ତ୍ର ବିଶେଷ । ସର୍ବ ପ୍ରଥମେ ଉପଲବ୍ଧି ଭିତରେ ଆଣିବାକୁ ହେବ ଯେ ଶରୀରଗୁଡ଼ିକର ଅସ୍ତିତ୍ୱ କେବଳ ଆମ ପାଇଁ, କିନ୍ତୁ ଆମର ଅସ୍ତିତ୍ୱ ଶରୀରମାନଙ୍କ ପାଇଁ ନୁହେଁ । ଏସବୁ ଶରୀର ଆମର ଓ ଆମ ବ୍ୟବହାର ପାଇଁ । ଆମେ ଶରୀରମାନଙ୍କର ନୋହୁଁ ବା ତାଙ୍କଦ୍ୱାରା ପରିଚାଳିତ ହେବା ପାଇଁ ଉଦ୍ଦିଷ୍ଟ ନୋହୁଁ । ସେଥିପାଇଁ ଶରୀର ଯନ୍ତ୍ରକୁ ଶୋଧନ କରିବାକୁ ହେବ, ତାଲିମ ଦେବାକୁ ହେବ ଓ ଉନ୍ନତ କରିବାକୁ ହେବ । ତାକୁ ଏପରି ଛାଞ୍ଚରେ ଢ଼ାଳିବାକୁ ହେବ ଓ ଏପରି ଉପାଦାନରେ ଗଢ଼ିବାକୁ ପଡ଼ିବ, ଯେପରି ତାହା ପାର୍ଥିବ ଜଗତରେ ମନୁଷ୍ୟର ଶ୍ରେଷ୍ଠ ଆଦର୍ଶ ସାଧନ କରିବା ପାଇଁ ସକ୍ଷମ ସର୍ବୋତ୍କୃଷ୍ଟ ଯନ୍ତ୍ର ହେବ । ଯେଉଁ ସବୁ ସାଧନା ଓ ଉପାଦାନ ଏ ଦିଗରେ ଅନୁକୂଳ ହେବ ବା ଅଗ୍ରସର କରାଇବ ସେଗୁଡ଼ିକୁ ଉତ୍ସାହର ସହିତ ଅଭ୍ୟାସ କରି, ଯେଉଁଗୁଡ଼ିକ ଏହାର ପରିପନ୍ଥୀ ହେବ ସେଗୁଡ଼ିକୁ ବର୍ଜନ କରିବାକୁ ହେବ । ଅତୀତରେ ଶରୀରର ଯାହା ଇଚ୍ଛା ଥାଉ ବା ସେ ଯାହା କିଛି ଅଭ୍ୟାସ କରି ଥାଉ ନା କାହିଁକି, ଶରୀର ଆମର, ସେ ଆମର ଭୃତ୍ୟ । ସେ ନିଶ୍ଚୟ ଆମ ଇଚ୍ଛାଅନୁରୂପ କାର୍ଯ୍ୟ କରିବ । କିନ୍ତୁ ଯେଉଁ ମୁହୂର୍ତ୍ତରେ ଶରୀରମାନେ ମଣିଷର ଇଚ୍ଛା ମାନି ଚଳିବା ପରିବର୍ତ୍ତେ, ଲଗାମଟି ନିଜ ହାତକୁନେଇ, ତାକୁ ଚଳାଇବାକୁ ଦାବୀ କରନ୍ତି, ସେହି ମୁହୂର୍ତ୍ତରୁ ଜୀବନର ସମସ୍ତ ଉଦ୍ଦେଶ୍ୟ ଓଲଟି ଯାଏ ଏବଂ କୌଣସି ପ୍ରକାର ଉନ୍ନତି ସମ୍ଭବ ହୁଏ ନାହିଁ ।

ବ୍ରହ୍ମବିଦ୍ୟା ଲାଭ କରିବା ପାଇଁ ପ୍ରକୃତ ଆଗ୍ରହୀ ଲୋକ ଏହିଠାରୁ ହିଁ ଆରମ୍ଭ କରିବ । ପାର୍ଥିବ ଶରୀରର ସ୍ୱଭାବଟି ଏପରି ଯେ ତାହାକୁ ଅନାୟାସରେ ଆଜ୍ଞାବହ ଦାସ ବା ଯନ୍ତ୍ରରେ ପରିଣତ କରିହେବ । ଏହାର କେତେଗୁଡ଼ିଏ ବିଶେଷତ୍ୱ ଯୋଗୁଁ ଏହାକୁ ତାଲିମ ଦେବା ବା ଗୋଟିଏ ଛାଞ୍ଚରେ

ପକାଇବା ସହଜ ହୋଇଥାଏ । ଏହାର ଗୋଟିଏ ବୈଶିଷ୍ଟ୍ୟ ହେଉଛି ଥରେ ଏହାକୁ ଏକ ନିର୍ଦ୍ଦିଷ୍ଟ କାର୍ଯ୍ୟ କରିବାକୁ ଅଭ୍ୟାସ କରାଇ ଦେଲେ ସେ ସେହି ଧାରାରେ କାର୍ଯ୍ୟ କରି ଚାଲେ । ପୂର୍ବତନ କାର୍ଯ୍ୟ କରି ପୂର୍ବେ ଯେପରି ଆନନ୍ଦ ପାଉଥିଲା ନୂତନ କାର୍ଯ୍ୟ କରି ସେହିପରି ଆନନ୍ଦ ପାଏ । ଯଦି ଗୋଟିଏ ଖରାପ ଅଭ୍ୟାସ ଅଛି ତହିଁରେ ପରିବର୍ତ୍ତନ ଆଣିବା ବେଳକୁ ଶରୀର ବହୁତ ବାଧା ଦିଏ । ଯଦି ତାକୁ ଅଭ୍ୟାସ ବଦଳାଇବା ପାଇଁ ବାଧକରାଯାଏ, ତେବେ ଅଳ୍ପକାଳ ପରେ ତା ଉପରେ ଲଦି ଦିଆ ହେଉଥିବା ନୂତନ ଅଭ୍ୟାସକୁ ଆପଣାଛାଏଁ ପାଳନ କରି ଯାଏ । ସେ ପୂର୍ବେ ଯେପରି ପୁରୁଣା ବଦଭ୍ୟାସକୁ ସନ୍ତୋଷର ସହିତ ପାଳନ କରି ଚାଲିଥିଲା, ସେହିପରି ପୂର୍ଣ୍ଣ ସନ୍ତୋଷରେ ତା ଉପରେ ଲଦି ଦିଆଯାଇଥିବା ନୂତନ ଅଭ୍ୟାସକୁ ମଧ୍ୟ ପାଳନ କରି ଚାଲେ ।

ଆମେ ବର୍ତ୍ତମାନ ସ୍ଥୂଳ ଶରୀର ବିଷୟରେ ଆଲୋଚନା କରିବା ଯାହାକୁ ଆମେ ମୋଟାମୋଟି ଭାବରେ ପାର୍ଥିବ ଶରୀରର ଦୃଶ୍ୟମାନ ଅଂଶରୂପେ ଧରି ନେଉଁ ଯଦିଓ ତନ୍ମଧ୍ୟରୁ ବାଷ୍ପୀୟ ଭାଗ ସାଧନା ବିନା ସାଧାରଣ ଆଖିକୁ ଦେଖାଯାଏ ନାହିଁ । ଏହି ଶରୀର ମନୁଷ୍ୟର ବାହ୍ୟତମ ଆବରଣ, ତାର ନିମ୍ନତମ ଅଭିବ୍ୟକ୍ତି, ତାହାର ଅତି ସୀମିତ ଓ ଅପୂର୍ଣ୍ଣ ପ୍ରକାଶ ।

## ସ୍ଥୂଳ ଶରୀର

ଆମେ କି ଭଳି ଭାବରେ ଉକ୍ତସ୍ଥୂଳ ଶରୀରକୁ ନିର୍ମଳ ଓ ସୁନିୟନ୍ତ୍ରିତ କରିପାରିବା ତାହା ବୁଝିବାକୁ ହେଲେ ଆମକୁ ଏହାର ଗଠନ ତତ୍ତ୍ୱ ବିଷୟରେ ଦୀର୍ଘ ଆଲୋଚନା ଆବଶ୍ୟକ ହେବ । ଆରମ୍ଭରୁ ଦେଖିବାକୁ ମିଳେ, ଏହି ଶରୀର କେତେଗୁଡ଼ିଏ କାର୍ଯ୍ୟ ଇଚ୍ଛାଶକ୍ତିର ନିୟନ୍ତ୍ରଣ ବହିର୍ଭୂତ ଓ ଅନ୍ୟଗୁଡ଼ିକ ଇଚ୍ଛାଶକ୍ତିର ନିୟନ୍ତ୍ରଣାଧୀନ । ଏହି ଉଭୟ ଶ୍ରେଣୀର କାର୍ଯ୍ୟ ସ୍ନାୟୁମଣ୍ଡଳଦ୍ୱାରା ସାଧିତ ହେଉଛି, ଯଦିଓ ଏମାନଙ୍କର ପ୍ରକାରଭେଦ ଅଛି । ଗୋଟିଏ ସ୍ନାୟୁମଣ୍ଡଳୀ ଜୀବନକୁ ରକ୍ଷା କରିବା ପାଇଁ ଅତି ଆବଶ୍ୟକ କାର୍ଯ୍ୟଗୁଡ଼ିକ ଚଳାଏ । ଏହାଦ୍ୱାରା ଫୁସ୍‌ଫୁସ୍‌ର ସଙ୍କୋଚନ ପ୍ରସାରଣ କ୍ରିୟା ହୁଏ, ହୃତପିଣ୍ଡ

କ୍ରିୟାଶୀଳ ରହେ ଓ ପାକ ପ୍ରକିୟାର ପରିଚାଳନା ନିୟନ୍ତ୍ରିତ ହୋଇଥାଏ । ଏହା ସ୍ୱୟଂକ୍ରିୟ (ଇଚ୍ଛା ନିରପେକ୍ଷ) ତନ୍ତୁଦ୍ୱାରା ଗଠିତ ଏବଂ ସାଧାରଣତଃ ସହଯୋଗୀ ସ୍ନାୟୁମଣ୍ଡଳ (Sysmpthetic System) ନାମରେ ଅଭିହିତ । ସୁଦୂର ଅତୀତରେ ଏହି ପାର୍ଥିବ ଶରୀର ଯେତେବେଳେ କ୍ରମ-ବିକାଶ ପଥରେ ଗଠିତ ହେଉଥିଲା ସେତେବେଳେ ଏହି ସ୍ନାୟୁମଣ୍ଡଳୀ ମଧ୍ୟ ପ୍ରାଣୀର ନିୟନ୍ତ୍ରଣାଧୀନ ଥିଲା । କିନ୍ତୁ କ୍ରମେ ଏହା ସ୍ୱୟଂକ୍ରିୟ ବା ଇଚ୍ଛାନିରପେକ୍ଷ ହୋଇ ପଡ଼ିଲା ଏବଂ ଇଚ୍ଛାକୃତ ନିୟନ୍ତ୍ରଣର ବର୍ହିର୍ଭୂତ ହୋଇ ଆଂଶିକ ସ୍ୱାତନ୍ତ୍ର୍ୟ ଭିତରେ ପ୍ରାଣଧାରଣ ନିମିତ୍ତ ଅତ୍ୟାବଶ୍ୟକ କ୍ରିୟାମାନ (vital activities) ସମ୍ପନ୍ନ କଲା । ସାଧାରଣତଃ ଲୋକ ସୁସ୍ଥ ଅବସ୍ଥାରେ ଥିଲାବେଳେ ସେଗୁଡ଼ିକ ପ୍ରତି ଲକ୍ଷ୍ୟ ରଖିପାରେ ନାହିଁ । କିନ୍ତୁ ନିଶ୍ୱାସ ରୋଧ ହୋଇ ଗଲେ କିମ୍ବା ପ୍ରଶ୍ୱାସ ନେବାରେ କଷ୍ଟ ହେଲେ, ତାର ନିଶ୍ୱାସ ପ୍ରଶ୍ୱାସ ପ୍ରତି ଦୃଷ୍ଟି ପଡ଼େ । ହୃତପିଣ୍ଡ ଚଳନ ବେଗଶୀଳ ହୋଇ ପଡ଼ିଲେ କିମ୍ବା ଅନିୟମିତ ହେଲେ ହୃତପିଣ୍ଡର କ୍ରିୟା ଜଣାପଡ଼େ । ଏସବୁର କ୍ରିୟା ଠିକ୍ ଥିବା ପର୍ଯ୍ୟନ୍ତ ଏସବୁ ପ୍ରତି କାହାରି ଲକ୍ଷ୍ୟ ନ ଥାଏ । ଏ ସହଯୋଗୀ ସ୍ନାୟୁମଣ୍ଡଳୀକୁ ଦୀର୍ଘଦିନ ସାଧନା ବଳରେ ନିଜର ଇଚ୍ଛାଧୀନ କରିବା ସମ୍ଭବ ହୋଇଥାଏ । ଭାରତରେ ଏକ ଶ୍ରେଣୀର ଯୋଗୀ ଅଛନ୍ତି ଯେଉଁମାନଙ୍କୁ ହଠ ଯୋଗୀ କହନ୍ତି । ସେମାନେ ନିମ୍ନସ୍ତରର ମାନସିକ ଶକ୍ତି ଜାଗ୍ରତ କରିବା ଉଦ୍ଦେଶ୍ୟରେ ଏହିପ୍ରକାର ଶକ୍ତି ଅସାଧାରଣ ମାତ୍ରାରେ ଅର୍ଜନ କରି ଥାଆନ୍ତି । କୌଣସି ପ୍ରକାର ଆଧ୍ୟାତ୍ମିକ, ନୈତିକ ବା ମାନସିକ ଉନ୍ନତି ସାଧନ ନ କରି ଏହି ସ୍ଥୂଳ ଶରୀର ଉପରେ ସିଧା ସଳଖ କାର୍ଯ୍ୟ କରି ନିମ୍ନସ୍ତରର ମାନସିକ ଶକ୍ତି ଜାଗ୍ରତ କରାଯାଇପାରେ । ହଠ ଯୋଗୀମାନେ ତାଙ୍କର ନିଶ୍ୱାସ ପ୍ରଶ୍ୱାସ ନିୟନ୍ତ୍ରଣ କରିବାକୁ ଶିଖନ୍ତି, ଏପରି କି ଦୀର୍ଘକାଳ ଧରି ନିଶ୍ୱାସରୋଧ କରି ଦେଇ ପାରନ୍ତି । ସେମାନେ ଇଚ୍ଛାନୁସାରେ ହୃତପିଣ୍ଡର ସ୍ପନ୍ଦନକୁ ନିୟନ୍ତ୍ରଣ କରିପାରନ୍ତି । ସଂଚାଳନକୁ ଦ୍ରୁତତର ବା ମନ୍ଥର କରି ଦେଇପାରନ୍ତି । ଏହି ସବୁ ଉପାୟରେ ପାର୍ଥିବ ଶରୀରକୁ ଏକ ପ୍ରକାର ଅବସ୍ଥାରେ ପକାଇ ଦେଇ କାମନା ଶରୀରକୁ ତହିଁରୁ ମୁକ୍ତ କରି ନିଅନ୍ତି । କିନ୍ତୁ ଏହି ପନ୍ଥା ଅନୁକରଣ ଯୋଗ୍ୟ ନୁହେଁ । ତଥାପି ପାଶ୍ଚାତ୍ୟ ଦେଶର ଲୋକମାନେ ଶରୀରକୁ ଯେପରି ଅତ୍ୟାବଶ୍ୟକ ମନେ କରନ୍ତି ସେମାନଙ୍କ

ପାଇଁ ଏହା ଶିକ୍ଷଣୀୟ । ସେମାନେ ଜାଣିବା ଦରକାର ଏହି ସହଯୋଗୀ ସ୍ନାୟୁମଣ୍ଡଳକୁ ମନୁଷ୍ୟ କିପରି ସମ୍ପୂର୍ଣ୍ଣ ରୂପେ ନିଜର ଇଚ୍ଛାଧୀନ କରିପାରେ । ସେମାନଙ୍କର ଉପଲବ୍ଧି କରିବା ଉଚିତ କିପରି ହଜାର ହଜାର ମନୁଷ୍ୟ ଏହି ଶରୀରରୂପୀ ବନ୍ଦିଶାଳାରୁ ମୁକ୍ତ ହେବା ପାଇଁ ଅଶେଷ କଷ୍ଟକର ସାଧନା କରିଥାଆନ୍ତି । ସେମାନେ ଆହୁରି ଜାଣିବା ଉଚିତ, ଶରୀର ପ୍ରାଣ ଶକ୍ତି ରହିତ ଥିବା ସମୟରେ ମଧ୍ୟ ସେମାନେ ଜୀବିତ ଥାଆନ୍ତି । ହଠ ଯୋଗୀମାନେ ଆଉକିଛି ନ ହେଲେ ସୁଦ୍ଧା ନିଷ୍ପାପର, ଇନ୍ଦ୍ରିୟର ଦାସ ନୁହନ୍ତି ।

ଏହାପରେ ଆମ ଇଚ୍ଛାର ନିୟନ୍ତ୍ରଣାଧୀନ ସ୍ନାୟୁମଣ୍ଡଳ ରହିଛି । ଆମର ମାନସିକ କାର୍ଯ୍ୟକଳାପ ସମ୍ବନ୍ଧରେ ଏହାର ଗୁରୁତ୍ୱ ଅଧିକ । ଏହି ମହାନ ସ୍ନାୟୁମଣ୍ଡଳଟି ଆମଚିନ୍ତନର ଯନ୍ତ୍ରସ୍ୱରୂପ । ଏହା ଦ୍ୱାରା ଆମେ ଏହି ଭୂଲୋକରେ ଅନୁଭବ କରିପାରୁଁ ଓ ଚଳପ୍ରଚଳ କରିପାରୁଁ । ମସ୍ତିଷ୍କ ଓ ମେରୁଦଣ୍ଡ ମିଳିତ ଭାବେ ଏହି କେନ୍ଦ୍ର ଗଠନ କରିଛନ୍ତି । ଏହି ମେରୁଦଣ୍ଡ ଓ ମସ୍ତିଷ୍କ କେନ୍ଦ୍ରରୁ ଦେହର ପ୍ରତ୍ୟେକ ଅଂଶକୁ ସ୍ନାୟୁର ସୂକ୍ଷ୍ମ ତନ୍ତୁ ସବୁ ଯାଇ ଅଛନ୍ତି । ଏ ସ୍ନାୟୁଗୁଡ଼ିକ ଦୁଇଟି ଶ୍ରେଣୀରେ ବିଭକ୍ତ ଯଥା - ସଂଜ୍ଞାବହା ଓ ଚେଷ୍ଟାବହା । ଆମେ ଯେଉଁ ସ୍ନାୟୁଗୁଡ଼ିକ ବଳରେ ଅନୁଭବ କରି ପାରୁଛୁଁ ସେଗୁଡ଼ିକ ସଂଜ୍ଞା ବହା ଓ ଶରୀରର ବାହାର ଦିଗରୁ ଉକ୍ତ କେନ୍ଦ୍ର ପର୍ଯ୍ୟନ୍ତ ପ୍ରଧାବିତ । ଚେଷ୍ଟାବହା ସ୍ନାୟୁମାନଙ୍କ ଦ୍ୱାରା ଆମେ କାର୍ଯ୍ୟ ନିବାହ କରିଥାଉଁ । ଏହି ସ୍ନାୟୁଗୁଡ଼ିକ ଉକ୍ତ କେନ୍ଦ୍ରରୁ ବାହାରି ଶରୀରର ସୀମା ପର୍ଯ୍ୟନ୍ତ ପ୍ରଧାବିତ । ଶରୀରର ପ୍ରତ୍ୟେକ ଅଂଶରୁ ସ୍ନାୟୁତନ୍ତୁ ସବୁ ଯାଇ ପରସ୍ପର ସହିତ ମିଳିତ ହୋଇ ସ୍ନାୟୁଗୁଚ୍ଛମାନ ସୃଷ୍ଟି କରନ୍ତି । ଏପରି ଗଠିତ ସ୍ନାୟୁ ଗୁଚ୍ଛଗୁଡ଼ିକ ମେରୁ ମଜ୍ଜାର ତନ୍ତୁ ଯୁକ୍ତ ବହିରାବରଣ ଗଠନ କରି ଥାଆନ୍ତି ଏବଂ ଉର୍ଦ୍ଧ୍ୱଦିଗକୁ ଗତି କରି ଆମର ସମସ୍ତ ଅନୁଭୂତି ଓ ଇଚ୍ଛାଦ୍ୱାରା ନିୟନ୍ତ୍ରିତ ଗତିର କେନ୍ଦ୍ର, ମସ୍ତିଷ୍କରେ ଶାଖା ବିସ୍ତାର କରି ଥାଆନ୍ତି । ଏହି ସ୍ନାୟୁମଣ୍ଡଳ ସାହାଯ୍ୟରେ ମନୁଷ୍ୟ ତାର ଇଚ୍ଛା ଓ ଚେତନା ପ୍ରକାଶ କରିଥାଏ । ସେଥିପାଇଁ ମସ୍ତିଷ୍କକୁ ଇଚ୍ଛା ଓ ଚେତନାର ଆଧାର ବୋଲି କୁହାଯାଇଥାଏ । ମସ୍ତିଷ୍କ ଓ ସ୍ନାୟୁମଣ୍ଡଳର ସାହାଯ୍ୟ ବିନା ଏହି ପୃଥିବୀରେ କୌଣସି କାର୍ଯ୍ୟ କରିବା ମନୁଷ୍ୟ ପକ୍ଷରେ ଅସମ୍ଭବ । ଏହି ସ୍ନାୟୁ ମଣ୍ଡଳର ଅବ୍ୟବସ୍ଥା ବା ବିଶୃଙ୍ଖଳା ଘଟିଲେ ମଣିଷ ନିଜକୁ ଶୃଙ୍ଖଳିତ

ଭାବରେ ପ୍ରକାଶ କରି ପାରେ ନାହିଁ । ଜଡ଼ବାଦୀମାନେ ଏହାକୁ ଭିତ୍ତି କରି ଯୁକ୍ତି କରି ଥାଆନ୍ତି ଯେ ଚିନ୍ତନ ଓ ମସ୍ତିଷ୍କର କାର୍ଯ୍ୟ ଏକତ୍ର ପରିବର୍ତ୍ତିତ ହେଉ ଥାଆନ୍ତି । ଜଡ଼ବାଦୀମାନଙ୍କ ପରି କେବଳ ପାର୍ଥିବ ଜଗତ କଥା ବିଚାରକୁ ନେଲେ ଚିନ୍ତନ ଓ ମସ୍ତିଷ୍କ କ୍ରିୟା ଏକତ୍ର ପରିବର୍ତ୍ତିତ ହେଉଥିବା କଥା ଠିକ ହୋଇପାରେ; କିନ୍ତୁ ଚିନ୍ତନ ଯେ ସ୍ନାୟବିକ କ୍ରିୟା ନୁହେଁ ସେ କଥା ବୁଝାଇବା ପାଇଁ ଭୁବଲୋକର ଶକ୍ତି ଓ ସମ୍ପର୍କ କଥା ବିଚାର କରିବାକୁ ପଡ଼ିବ ।

ଯଦି କୌଣସି ଲୋକର ମସ୍ତିଷ୍କ ମାଦକ ଦ୍ରବ୍ୟ ବା ଅନ୍ୟ କିଛି ରୋଗ ବା ଆଘାତଦ୍ୱାରା ବିକୃତ ହୁଏ ତେବେ ତାହାର ଚିନ୍ତା ଏ ଜଗତରେ ଉପଯୁକ୍ତ ଭାବରେ ପ୍ରକାଶ ଲାଭ କରିପାରେ ନାହିଁ । ଜଡ଼ବାଦୀମାନେ କହିପାରନ୍ତି ଯେ ନିର୍ଦ୍ଦିଷ୍ଟ ରୋଗରେ ନିର୍ଦ୍ଦିଷ୍ଟ ପ୍ରକାର ଚିନ୍ତାରେ ବିକୃତି ଘଟେ, କିନ୍ତୁ ଏକଥା ଠିକ୍ ନୁହେଁ । ଆଫାସିଆ ନାମକ ଏକ ରୋଗ ଅଛି । ଏହା ଅବଶ୍ୟ କ୍ୱଚିତ ଦେଖାଯାଏ । ଏହି ରୋଗରେ କାନ ପାଖରୁ ମସ୍ତିଷ୍କର ଗୋଟିଏ ଅଂଶନଷ୍ଟ ହୋଇଯାଏ ଏବଂ ବ୍ୟକ୍ତିଟି ଶବ୍ଦ ସମ୍ପର୍କରେ ପୂର୍ଣ୍ଣରୂପେ ସ୍ମୃତି ଶକ୍ତି ହରାଇ ବସେ । ଏହି ରୋଗରେ ଆକ୍ରାନ୍ତ ବ୍ୟକ୍ତିକୁ ଗୋଟିଏ ପ୍ରଶ୍ନ ପଚାରିଲେ ସେ ଉତ୍ତର ଦେଇ ପାରେ ନାହିଁ । କିନ୍ତୁ ତା ନାମ କହିଲେ ଜାଣିପାରେ, ଗୋଟିଏ ବିଷୟ ତା ଆଗରେ ପଢ଼ି ଶୁଣାଇ ଦେଲେ ସେ ବିଷୟରେ ତାର ସମ୍ମତି ଅସମ୍ମତି ଜଣାଇ ପାରେ । ଏଥିରୁ ସ୍ପଷ୍ଟ ଯେ ରୋଗୀ ଭାବି ପାରୁଛି, କିନ୍ତୁ କହିପାରୁ ନାହିଁ । ଏ ସ୍ଥଳରେ ଆପାତତଃ ଜଣା ପଡେ ଯେ ମସ୍ତିଷ୍କର କ୍ଷୟ ପ୍ରାପ୍ତ ଅଂଶଟି ଭୌତିକ ଜଗତର ଶବ୍ଦ ସ୍ମରଣ ରଖିବା ଶକ୍ତି ସହିତ ସମ୍ପୃକ୍ତ ଥିଲା ଏବଂ ଏହି ଅଂଶଟି ହରାଇ ରୋଗୀ ସେ ଶବ୍ଦ ସ୍ମରଣ ଶକ୍ତି ବିନା ବୋବା (ଜଡ଼ା) ହୋଇଯାଇଛି । କିନ୍ତୁ ତା'ର ଚିନ୍ତା କରିବା ଶକ୍ତି ରହିଛି । ସେ କୌଣସି ଏକ ବିଷୟ ଉପରେ ତାର ମତାମତ ଦେଇ ପାରୁଛି । ଏହିଠାରେ ଜଡ଼ବାଦୀମାନଙ୍କ ଯୁକ୍ତି ଅପ୍ରମାଣିତ ହେଉଛି । ଏଥିରୁ ଜଣା ଯାଉଛି ଯେ ସ୍ଥୂଳ ଶରୀରରେ ଯନ୍ତ୍ରର ଅକ୍ଷମତା ହେତୁ ମନୁଷ୍ୟର ନିଜକୁ ପ୍ରକାଶ କରିବା ଶକ୍ତି ସୀମିତ ହୋଇ ଯାଉଛି । ସେ ଯଦି ଏଥିରୁ ମୁକ୍ତ ହୁଏ ତାର ସମ୍ପୂର୍ଣ୍ଣ ଶକ୍ତି ପ୍ରକାଶ କରି ପାରିବ, ଯଦିଓ ପୁନରାୟ ପାର୍ଥିବ ଶରୀର ଧାରଣ କଲେ ତାର ଶକ୍ତି ପୁଣି ସୀମିତ ହୋଇଯିବ । ଏଠାରେ ଆମ ଆଲୋଚନାର ମୁଖ୍ୟ ଉଦ୍ଦେଶ୍ୟ ଜଡ଼ବାଦୀମାନଙ୍କ

କଥାର ସତ୍ୟାସତ୍ୟ ନିରୂପଣ କରିବା ନୁହେଁ । ଆଲୋଚ୍ୟ ବିଷୟ ହେଉଛି ମନୁଷ୍ୟର କ୍ଷମତା ସ୍ଥୂଳ ଜଗତରେ ତାର ଅଭିବ୍ୟକ୍ତି କାଳରେ ସ୍ଥୂଳ ଶରୀରସ୍ଥ ଯନ୍ତ୍ରର ସୀମିତ କ୍ଷମତା ଅନୁସାରେ କିପରି ସୀମିତ ହୋଇଥାଏ ଏବଂ ଏହି ପାର୍ଥିବ ଯନ୍ତ୍ରଟି ସାଧାରଣତଃ ବାହ୍ୟ ପଦାର୍ଥମାନଙ୍କ ଦ୍ୱାରା କିପରି ପ୍ରଭାବିତ ହୋଇଥାଏ । ସେହି ପଦାର୍ଥଗୁଡ଼ିକ ଏହାର ଯେପରି କ୍ଷତି କରିପାରନ୍ତି ସେହିପରି ମଧ୍ୟ ଉନ୍ନତି ସାଧନ କରି ପାରନ୍ତି, ଏହା ଜାଣିବା ସବୁଠାରୁ ବଡ଼ କଥା ।

ଏହି ସ୍ନାୟୁମଣ୍ଡଳ ଶରୀରର ଅନ୍ୟାନ୍ୟ ଅଂଶ ପରି କୋଷଦ୍ୱାରା ଗଠିତ । ଏଗୁଡ଼ିକ ନିର୍ଦ୍ଦିଷ୍ଟ ଆକାରର ଅତି କ୍ଷୁଦ୍ର ଦେହ ଯୁକ୍ତ ଓ ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଦେଖିହୁଏ । ଏହି କୋଷଗୁଡ଼ିକ କାର୍ଯ୍ୟର ବିଭିନ୍ନତା ଘେନି ରୂପ ପରିବର୍ତ୍ତନ କରି ଥାଆନ୍ତି । ଏହି କୋଷଗୁଡ଼ିକ ଅଣୁରେ (Molecules) ଓ ଅଣୁଗୁଡ଼ିକ ପୁଣି ପରମାଣୁରେ ଗଠିତ । ପ୍ରତ୍ୟେକ ପରମାଣୁ ରାସାୟନିକ ମୌଳିକ ପଦାର୍ଥର ଅବିଭାଜ୍ୟ କଣିକା । ଏହି ରାସାୟନିକ ପରମାଣୁଗୁଡ଼ିକ ବିଭିନ୍ନ ପରିପାଟୀରେ ସଂଯୋଜିତ ହୋଇ ବାଷ୍ପୀୟ, ତରଳ ଓ କଠିନ ପଦାର୍ଥମାନ ସ୍ଥୂଳ ଶରୀରରେ ଗଠନ କରିଥାଆନ୍ତି । ବ୍ରହ୍ମବିଦ୍ୟାବିଦ୍‌ମାନଙ୍କ ମତରେ ପ୍ରତ୍ୟେକ ପରମାଣୁ ପ୍ରାଣବନ୍ତ ଓ ସ୍ୱତନ୍ତ୍ର ଜୀବନ ଧାରଣ କରିବାକୁ ସକ୍ଷମ । ଏମାନଙ୍କ ସମଷ୍ଟିରେ ଗଠିତ ଅଧିକ ଜଟିଳ କୋଷ ମଧ୍ୟ ଗୋଟିଏ ଜୀବନ୍ତ ବସ୍ତୁ । ପ୍ରତ୍ୟେକ କୋଷର ସ୍ୱତନ୍ତ୍ର ଭାବେ ନିଜର ଜୀବନ ଅଛି । ଏହି ସବୁ ପରମାଣୁ, ଅଣୁ ଓ ଜୀବକୋଷ ଏକତ୍ର ଗୋଟିଏ ଜୀବନ୍ତ ଶରୀର ଗଠନ କରନ୍ତି ଏବଂ ଏହି ଶରୀରରେ ସେମାନଙ୍କର ପୃଥକ ପୃଥକ ଜୀବନ ଭିତରେ ଜଣାଥିବା ଚେତନାଠାରୁ ଉଚ୍ଚତର ଚେତନାର ବାହନ ରୂପେ କାର୍ଯ୍ୟ କରନ୍ତି ।

ଏହିପରି ଶରୀର ଗଠନ କରୁଥିବା କ୍ଷୁଦ୍ର କଣିକାଗୁଡ଼ିକ ପ୍ରତି ମୁହୂର୍ତ୍ତରେ ଯାତାୟାତ କରୁଥାଆନ୍ତି । କଣିକା ଗୁଡ଼ିକ ରାସାୟନିକ ପରମାଣୁର ସମଷ୍ଟି । ଏଗୁଡ଼ିକ ଅତି ଛୋଟ । ଖାଲି ଆଖିକୁ ଦେଖାଯାଆନ୍ତି ନାହିଁ ଯଦିଓ ସେଥିରୁ ଅନେକଙ୍କୁ ଅଣୁବୀକ୍ଷଣ ସାହାଯ୍ୟରେ ଦେଖିହୁଏ । ଅଣୁବୀକ୍ଷଣ ଯନ୍ତ୍ର ତଳେ ଟିକିଏ ରକ୍ତ ରଖି ପରୀକ୍ଷା କଲେ ଦେଖାଯିବ ଯେ ସେଥିରେ ଅନେକ

ଗୁଡ଼ିଏ ଜୀବନ୍ତ ପଦାର୍ଥ ଚଳ ପ୍ରଚଳ କରୁଅଛନ୍ତି । ସେଥିରୁ କେତେକ ଶ୍ୱେତ କଣିକା ଓ ଅନ୍ୟଗୁଡ଼ିକ ଲାଲ କଣିକା । ଶ୍ୱେତ କଣିକାଗୁଡ଼ିକର ଗଠନ, ଆକାର ଓ କାର୍ଯ୍ୟ ସାଧାରଣ ଆମୋଏବା (amaeba) ପରି । ଅନେକ ରୋଗ ସମ୍ପର୍କରେ ଆମେ ଏହି ଆଣବିକ ଜୀବ କଣିକାଗୁଡ଼ିକୁ ଦେଖି ଥାଉଁ । ବୈଜ୍ଞାନିକମାନେ କହନ୍ତି ଯେ ଆମ ଶରୀରରେ ଶତ୍ରୁ ଭାବାପନ୍ନ ଓ ମିତ୍ର ଭାବାପନ୍ନ ଆଣବିକ ଜୀବ-କଣିକାମାନେ ଅଛନ୍ତି । ଏଥିରୁ ପୂର୍ବୋକ୍ତ ଦଳ ଆମର କ୍ଷତି କରନ୍ତି ଓ ଶେଷୋକ୍ତ ଦଳ ସେମାନଙ୍କୁ ଆକ୍ରମଣ କରି ସେହି ବହିରାଗତ ପ୍ରାଣହାନିକର କୀଟାଣୁ ବା ବର୍ଜନୀୟ ଜୀର୍ଣ୍ଣବସ୍ତୁ ଗୁଡ଼ିକୁ ଖାଇ ପରିଷ୍କାର କରି ଦିଅନ୍ତି । କେତେକ କୀଟାଣୁ ଆମ ଶରୀରରେ ବାହାରୁ ପ୍ରବେଶ କରି ଶାରୀରିକ ରୋଗ ଗ୍ରସ୍ତ କରନ୍ତି, କିନ୍ତୁ ଅନ୍ୟ କେତେକ ଶାରୀରିକ ସ୍ୱାସ୍ଥ୍ୟର ଉନ୍ନତି କରାନ୍ତି । ଏହିପରି ଆମର ଶରୀରଗୁଡ଼ିକ ଅନବରତ ତାଙ୍କର ବସ୍ତୁରେ ପରିବର୍ତ୍ତନ କରି ଚାଲିଥାନ୍ତି । ବସ୍ତୁ କଣିକାଗୁଡ଼ିକ ଆମ ଶରୀରକୁ ଆସି ତହିଁରେ କିଛି କାଳ ପାଇଁ ରହନ୍ତି । ପୁଣି ଅଲଗା ହୋଇ ଅନ୍ୟ ଶରୀରକୁ ଚାଲି ଯାଆନ୍ତି । ସର୍ବଦା ଏହିପରି ପରିବର୍ତ୍ତନ ଓ ଆନ୍ତର୍ବିତରଣ ପ୍ରକ୍ରିୟା ଚାଲିଥାଏ ।

ଅଧିକାଂଶ ଲୋକ ଏହିସବୁ ଘଟଣା ବିଷୟରେ କିଛି ଜାଣନ୍ତି ନାହିଁ ଏବଂ ଜାଣିବାକୁ ଯତ୍ନମଧ କରନ୍ତି ନାହିଁ । କିନ୍ତୁ ସ୍ଥୂଳ ଶରୀରକୁ ବିଶୋଧନ କରିବା କାର୍ଯ୍ୟ ଏହି କଣିକାମାନଙ୍କ ଉପରେ ନିର୍ଭର କରେ । ଏହି ସୂତ୍ରରେ ଶରୀରକୁ ତା ଭିତରେ ଥିବା ମଣିଷ ପାଇଁ ଅଧିକ ଉପଯୁକ୍ତ ବାହନ କରି ଗଢ଼ି ହୁଏ । ସାଧାରଣ ଲୋକମାନେ ତାଙ୍କ ଶରୀରକୁ ତାକୁ ଦିଆଯାଉଥିବା ଜିନିଷରେ ନିଜ ଇଚ୍ଛା ଅନୁସାରେ ଗଠିତ ହେବାକୁ ଛାଡ଼ି ଦିଅନ୍ତି । ସେମାନେ ଶରୀରକୁ ଯୋଗାଉ ଥିବା ପଦାର୍ଥର ପ୍ରକୃତି ପ୍ରତି ଦୃଷ୍ଟି ରଖନ୍ତି ନାହିଁ, କେବଳ ଦେଖନ୍ତି ଆହାର ମନବୋଧିଆ ଓ ସୁଆଦିଆ ହେଲା କି ନାହିଁ । ସେମାନେ କେବେ ହେଲେ ଭାବନ୍ତି ନାହିଁ ସେ ଖାଦ୍ୟ ତାଙ୍କ ଭିତରେ ଯେଉଁ ପ୍ରକୃତ ମଣିଷଟି ଚିରନ୍ତନ ଭାବେ ବିରାଜିତ ତାହା ପାଇଁ ପବିତ୍ର ଓ ମହତ୍ତ୍ୱପୂର୍ଣ୍ଣ ବାସସ୍ଥାନ ରୂପେ ଶରୀରକୁ ଗଢ଼ିବା ନିମନ୍ତେ କେତେ ଦୂର ସହାୟକ ହେବ । ତାଙ୍କ ଶରୀରକୁ କେଉଁ ସବୁ କଣିକା ଆସୁଛି ବା ତାଙ୍କ ଶରୀରରୁ କେଉଁ ସବୁ କଣିକା ଯାଉଛି ସେଥି ପ୍ରତି ଦୃଷ୍ଟି ରଖନ୍ତି ନାହିଁ । ଖାଦ୍ୟ ପେୟରେ କିଛି ବାରଣ ରଖନ୍ତି ନାହିଁ

କି ବାଛ ବିଚାର କରନ୍ତି ନାହିଁ । ଫଳରେ ଜଣେ ଯତ୍ନହୀନ ଶିଳ୍ପୀ ତା ଘର ତୋଳିବା ପାଇଁ ଲୋମ, କେଶ, କାଦୁଅ, ଗୋଡ଼ିବାଲି, ନଖ, ମଇଳା ପରି ଯାହାତାହା ଆବର୍ଜନା ପଦାର୍ଥ ନେଇ ତୋଳି ଥିବା ଘରଟିଏ ପରି ସାଧାରଣ ଲୋକମାନଙ୍କ ଶରୀର ଅଯତ୍ନରେ ଗଠିତ ହୋଇଥାଏ ।

ସ୍ଥୂଳ ଶରୀରକୁ ଶୋଧନ କରିବାକୁ ହେଲେ ମଣିଷକୁ ଗୋଟିଏ ସୁଚିନ୍ତିତ ପ୍ରଣାଳୀରେ ଉକ୍ତ ଉପାଦାନ କଣିକାଗୁଡ଼ିକୁ ନିର୍ବାଚନ କରି ଶରୀର ଗଠନରେ ଲଗାଇବାକୁ ହେବ । ସେଥିପାଇଁ ଯଥା ଶକ୍ତି ସମ୍ଭବ ବିଶୁଦ୍ଧ ପଦାର୍ଥ ଖାଦ୍ୟ ରୂପେ ଗ୍ରହଣ କରିବା ସଙ୍ଗେ ସଙ୍ଗେ ଦୂଷିତ ଓ ଅମାର୍ଜିତ ବସ୍ତୁଗୁଡ଼ିକୁ ଆହାରରୁ ବର୍ଜନ କରିବାକୁ ପଡ଼ିବ । ଏହା ଜଣା କଥା ଯେ ଯତ୍ନହୀନ ଭାବରେ ଜୀବନ ଯାପନ କାଳରେ ଗଠିତ କଣିକାଗୁଡ଼ିକ ସ୍ୱାଭାବିକ ପରିବର୍ତ୍ତନ ଧାରାରେ କେବଳ ଯଦି ଅପବିତ୍ର ଆହାର ବର୍ଜନ କରିବେ ଓ ଅପରିଚ୍ଛନ୍ନ ପଦାର୍ଥ ଆଉ ଶରୀର ଗଠନରେ ନ ଲଗାନ୍ତି ତେବେ ପ୍ରାୟ ସାତବର୍ଷ ଭିତରେ ସେ ଅପବିତ୍ର କଣିକା ସବୁ ବଦଳି ଯିବେ; ଯଦିଓ ଏହି ପ୍ରକ୍ରିୟାକୁ ସାଧାନା ଦ୍ୱାରା ଦ୍ରୁତତର କରାଯାଇପାରେ । ପବିତ୍ର କଣିକା ଗୁଡ଼ିକର ସଂଖ୍ୟା ବଢ଼ିବା ସଙ୍ଗେ ସଙ୍ଗେ ଶରୀରରେ ଗୋଟିଏ ପ୍ରତିରକ୍ଷା ବାହିନୀ ଗଠିତ ହେବ । କୌଣସି ଅପବିତ୍ର କଣିକା ବାହାରୁ ଆକ୍ରମଣ କଲେ ବା ଇଚ୍ଛା ବିରୁଦ୍ଧରେ ପ୍ରବେଶ କଲେ ସଙ୍ଗେ ସଙ୍ଗେ ଏହି ପ୍ରତିରକ୍ଷା ବାହିନୀ ତାହାକୁ ନଷ୍ଟ କରି ଦିଏ । ମଣିଷ ନିଜ କ୍ରିୟାଶୀଳ ଇଚ୍ଛା ଶକ୍ତି ବଳରେ "ଶରୀର ପବିତ୍ରରହୁ" ଏହିପରି ଚିନ୍ତା କରିବା ଦ୍ୱାରା ମଧ୍ୟ ନିଜ ଶରୀରକୁ ବାହାରର ଅପବିତ୍ରତାରୁ ରକ୍ଷା କରିଥାଏ । ଏହି ଇଚ୍ଛାର ଚୁମ୍ବକୀୟ ଶକ୍ତି ବଳରେ ତା ପରିପାର୍ଶ୍ୱରୁ ଶରୀରରେ ପ୍ରବେଶ କରିବାକୁ ଚେଷ୍ଟା କରୁଥିବା ସମସ୍ତ ଅପବିତ୍ର କଣିକାମାନଙ୍କୁ ଅନବରତ ତଡ଼ିଦିଏ ଏବଂ ସେମାନଙ୍କର ସମସ୍ତ ପ୍ରକାର ପ୍ରବେଶ ପଥକୁ ରୋଧ କରିଦିଏ । ଏତଦ୍ୱାରା ଅପବିତ୍ର ବାୟୁ ମଣ୍ଡଳରେ ରହି ସୁଦ୍ଧା ତାହାର କୁ ପ୍ରଭାବରୁ ସୁରକ୍ଷିତ ରହିପାରେ ।

ଜଣେ ଲୋକ ଯେତେବେଳେ ଶରୀରକୁ ଏହିପରି ଭାବରେ ଶୋଧନ କରିବାକୁ ଏବଂ ଜୀବାତ୍ମାର କାର୍ଯ୍ୟ କରିବା ପାଇଁ ଉପଯୁକ୍ତ ଯନ୍ତ୍ରରୂପେ

ସଜାଡ଼ିବାକୁ ପ୍ରତିଜ୍ଞାବଦ୍ଧ ହୁଏ, ସେତେବେଳେ ସେ ଯୋଗାଭ୍ୟାସ ଦିଗରେ ପ୍ରଥମ ପଦକ୍ଷେପ ନିଏ । "ବ୍ରହ୍ମବିଦ୍ୟାର ସତ୍ୟଗୁଡ଼ିକ ମୁଁ ନିଜେ କିପରି ପରୀକ୍ଷା କରି ଦେଖିବାକୁ ଶିଖିବି ?" ଏହି ପ୍ରଶ୍ନ ନିଷ୍ଠା ସହିତ ପଚାରିବା ପୂର୍ବରୁ, ଏହି ଜନ୍ମରେ ହେଉ ବା ଅନ୍ୟ କେଉଁ ଜନ୍ମରେ ହେଉ, ତାକୁ ଏହି ପଦକ୍ଷେପ ନେବାକୁ ହେବ । ଯେ କୌଣସି ଅତିଭୌତିକ (Super physical) ଘଟଣା ନିଜେ ପରୀକ୍ଷା କରି ଦେଖିବାକୁ ଇଚ୍ଛା କଲେ ପ୍ରଥମେ ପାର୍ଥିବ ଶରୀର ଉପରେ ତାର ପ୍ରକୃତ ପ୍ରଭୁ ମଣିଷର ସମ୍ପୂର୍ଣ୍ଣ ଅଧିକାର ରହିବା ଦରକାର । କାରଣ, ସେ କେବଳ ଏହି ଅତିଭୌତିକ ସତ୍ୟର ଯଥାର୍ଥତା ମିଳାଇ ଦେଖିବ । ଯେ ପର୍ଯ୍ୟନ୍ତ ପ୍ରକୃତ ମଣିଷ ଏ ଶରୀର ରୂପୀ ବନ୍ଦିଶାଳାରେ ନିବିଡ଼ ବନ୍ଧନ ଭିତରେ ଅଛି ବା ଶରୀର ଅପବିତ୍ର ରହିଛି, ସେ ପର୍ଯ୍ୟନ୍ତ ଏହା ସମ୍ଭବ ହେବ ନାହିଁ । ଏପରି କି ଯଦି ସେ ତାର ପୂର୍ବବର୍ତ୍ତୀ ସୁସଂଯତ ଜୀବନରେ ଲାଭ କରିଥିବା ଆତ୍ମଶକ୍ତିରୁ କିଛି ଅଂଶ ଘେନି ଜନ୍ମଲାଭ କରିଥାଏ, ବର୍ତ୍ତମାନର ଅନୁପଯୁକ୍ତ ଶାରୀରିକ ଅବସ୍ଥା ମଧ୍ୟରେ ତାହା ଦେଖା ଦେଲେ ମଧ୍ୟ ସ୍ଥୂଳ ଶରୀରରେ ରହିଥିବା କାଳରେ, ଶରୀର ଅପବିତ୍ର ଥିଲେ, ତାକୁ ଉପଯୁକ୍ତ ଭାବରେ ବ୍ୟବହାର କରିପାରେ ନାହିଁ । ଏପରି ଶରୀର ମାଧ୍ୟମରେ ସଂଚରିତ ହେବାବେଳେ ସେ ଶକ୍ତି ନିଷ୍କ୍ରିୟ ବା ବିକୃତ ହୋଇଯାଏ ଏବଂ ଫଳାଫଳ ନିର୍ଭର ଯୋଗ୍ୟ ହୁଏ ନାହିଁ ।

ମନେ କର ଜଣେ ଲୋକ ନିଜ ଇଚ୍ଛାରେ ଆଗ୍ରହ କଲା ଯେ ସେ ଗୋଟିଏ ପବିତ୍ର ଶରୀର ଧାରଣ କରିବ, ତାହାହେଲେ ସେ ଏ ଶରୀର ପୂରାପୂରି ସାତବର୍ଷରେ ପରିବର୍ତ୍ତିତ ହୋଇ ଯାଉଥିବା ଘଟଣାର ସୁଯୋଗ ନେବ କିମ୍ବା ଅନ୍ୟ କଠିନ ପନ୍ଥା ଅବଲମ୍ବନ କରି ଅଳ୍ପକାଳ ମଧ୍ୟରେ ଶରୀରକୁ ବଦଳାଇ ଦେବାର ଯତ୍ନ କରିବ । କିନ୍ତୁ ଉଭୟ କ୍ଷେତ୍ରରେ ସେ ବିଳମ୍ବ ନ କରି କେଉଁ ପ୍ରକାର ଉପାଦାନରେ ନୂତନ ନିର୍ମଳ ଶରୀର ଗଠିତ ହେବ ତାହା ବାଛି ନେବ ଏବଂ ସେଥି ସଙ୍ଗରେ ଖାଦ୍ୟ ନିର୍ବାଚନ କଥା ଆପେ ଆପେ ଆସିବ । ସେ ସେହି ମୁହୂର୍ତ୍ତରୁ ଶରୀରରେ ଅପବିତ୍ର ଓ ଆବିଳତାପୂର୍ଣ୍ଣ କଣିକାମାନ ଯୋଗ କରୁଥିବା ପଦାର୍ଥଗୁଡ଼ିକୁ ତା ଖାଦ୍ୟରୁ ବର୍ଜନ କରିବ । ତାକୁ ସମସ୍ତ ସୁରାସାର ଓ ସୁରାସାର ଯୁକ୍ତ ପାନୀୟ ପରିତ୍ୟାଗ କରିବାକୁ ହେବ । କାରଣ,

ସେସବୁ ତାର ପାର୍ଥିବ ଶରୀରକୁ ସଢ଼ା ପଚା ପଦାର୍ଥରୁ ଜାତ ହୋଇଥିବା ଅତି ଅପବିତ୍ର ଆଣବିକ ଜୀବମାନଙ୍କୁ ଘେନି ଆସନ୍ତି । ଏଗୁଡ଼ିକ କେବଳ ତାଙ୍କ ନିଜ ଦୋଷରୁ ଘୃଣ୍ୟ ନୁହନ୍ତି । ସେମାନେ ତାଙ୍କ ସାଙ୍ଗରେ ଅନ୍ୟ ଘୃଣ୍ୟ ଜୀବ ବା ବସ୍ତୁ ଯାହାର ସେମାନେ ଅଙ୍ଗ ହୋଇ ଥାଆନ୍ତି ତାଙ୍କୁ ଆକର୍ଷଣ କରନ୍ତି; ଏପରି କି ଅତି ଅସ୍ପୃହଣୀୟ ଅଦୃଶ୍ୟ ପରଲୋକବାସୀମାନଙ୍କୁ ମଧ୍ୟ ଆକର୍ଷଣ କରି ଆଣନ୍ତି । ସେମାନଙ୍କ ଛଡ଼ା ଯେଉଁ ମଦ୍ୟପମାନେ ପାର୍ଥିବ ଶରୀର ହରାଇବା ପରେ ଶରୀର ଅଭାବରୁ ସେମାନଙ୍କର ମଦ୍ୟ ପାନ ଆଶା ମେଣ୍ଟାଇ ପାରୁ ନଥାନ୍ତି ସେମାନେ ମଦ୍ୟ ପାନ କରାଯାଉ ଥିବା ସ୍ଥାନ ଚାରିପଟରେ ତଥା ମଦ୍ୟପାନ କରୁଥିବା ଲୋକଙ୍କ ଚାରି କଡ଼ରେ ବୁଲି ବୁଲି ମଦ୍ୟପାନ କରୁଥିବା ଲୋକଙ୍କ ଦେହରେ ପ୍ରବେଶ କରି ଏହି ହୀନ ବୃତ୍ତି ଚରିତାର୍ଥ କରିବା ଯତ୍ନରେ ଥାଆନ୍ତି । ଯେଉଁ ସୁରୁଚି ସମ୍ପନ୍ନା ମହିଳାମାନେ ମଦ୍ୟ ପାନ କରନ୍ତି, ସେମାନେ ଯଦି ଥରେ ଦେଖି ପାରନ୍ତେ କିପରି ଘୃଣ୍ୟ ଜୀବମାନେ ତାଙ୍କର ଆନନ୍ଦରେ ଅଂଶ ଗ୍ରହଣ କରିବାକୁ ଚାକି ରହିଛନ୍ତି ଏବଂ ତାଙ୍କର ଅତି ନିକଟରେ କିପରି ଜମା ହୋଇଛନ୍ତି, ତାହାହେଲେ ସେମାନେ ଭୟ ବିହ୍ୱଳରେ ମଦ୍ୟପାନର ପାଖ ମାଡ଼ନ୍ତେ ନାହିଁ । କୁପ୍ରବୃତ୍ତିଯୁକ୍ତ ଅଦୃଶ୍ୟ ''ଭୌତିକ ପ୍ରାଣୀ'' (Evil elementals) ସମୂହ ମଦ୍ୟପର ଚିନ୍ତନ ଚାରି ପଟେ ସେମାନଙ୍କ ''ମୂଳ ଭୌତିକ ସତ୍ତା'' (elemental essence) ସହିତ ଘେରି ରହି ଥାଆନ୍ତି । ମଦ୍ୟପର ପାର୍ଥିବ ଶରୀର ତାହାର ଚାରିକଡ଼ରେ ଅନ୍ୟ ମଦ୍ୟପମାନଙ୍କର ମଦ୍ୟାଶକ୍ତ ଓ ଅସଂଯତ ଶରୀର ଦ୍ୱାରା ପରିତ୍ୟକ୍ତ ସ୍ଥୂଳତର କଣିକାମାନଙ୍କୁ ଆକର୍ଷିତ କରି ନିଜ ଭିତରେ ମିଶାଏ । ଏହି ସମସ୍ତ କଣିକା ଶରୀରକୁ ସ୍ଥୂଳରୁ ସ୍ଥୂଳତର କରିବା ସଙ୍ଗେ ସଙ୍ଗେ ଅଧୋଗତି ଘଟାଇଥାଏ । ଯେଉଁ ଲୋକମାନେ ସର୍ବଦା ସ୍ପିରିଟ, ସୁରା, ବିଅର ବା ଅନ୍ୟ ପ୍ରକାରର ମଦ୍ୟ ସହିତ ସଂଶ୍ଳିଷ୍ଟ, ତିଆରି କରିବା ବା ବିକ୍ରୟ କରିବା ଯେଉଁ ହେଉ, ସେମାନଙ୍କ ଶରୀର ଦେଖିଲେ ଜଣାପଡ଼େ କିପରି ନିକୃଷ୍ଟ ଓ ରୁକ୍ଷ ହୋଇଛି । ସମାଜର ସବୁ ସ୍ତରରେ ଥିବା ମଦ ରନ୍ଧାଳୀ ଓ ମଦ ବିକାଳୀଙ୍କ ଅବସ୍ଥା ଏହିପରି, ଯେଉଁମାନେ ଅତିରିକ୍ତ ମଦ୍ୟପାନ କରନ୍ତି ତାଙ୍କ କଥା କ'ଣ କହିବା । ଏମାନେ ସମସ୍ତେ ପୂର୍ଣ୍ଣରୂପେ ଦେଖାଇ ଦିଅନ୍ତି କିପରି ଲୋକମାନଙ୍କ ଦେହରେ ଏପରି

କଣିକା ଅଳ୍ପ ଅଳ୍ପ କରିଧୀରେ ଧୀରେ ଗଠିତ ହୁଏ ଏବଂ ଯେତିକି ଅଧିକରୁ ଅଧିକ ସ୍ଥୂଳ କଣିକା ଗଠିତ ହୁଏ ଶରୀର ସେତିକି ଅଧିକ ରୁକ୍ଷ ହେବାକୁ ଲାଗେ । ଅନ୍ୟ ଆହାର ଯୋଗ୍ୟ ବସ୍ତୁ ବିଷୟରେ ମଧ୍ୟ ସେହି କଥା । ସ୍ତନ୍ୟପାୟୀ ପଶୁମାନଙ୍କ ମାଂସ, ପକ୍ଷୀ, ସରୀସୃପ ଓ ମତ୍ସ୍ୟ, ଟାଣ ଖୋଳଯୁକ୍ତ କଙ୍କଡ଼ା, ଚିଙ୍ଗୁଡ଼ି ପ୍ରଭୃତି ପ୍ରାଣୀ ତଥା ପଚାସଢ଼ା ମାଂସ ଖାଇ ବଞ୍ଚୁଥିବା ଗେଣ୍ଡା, ସାମୁକା ପ୍ରଭୃତି ପ୍ରାଣୀମାନଙ୍କ ମାଂସ ଆହାର କରି ମଣିଷ ଦରକାର କରୁଥିବା ସମ୍ପୂର୍ଣ୍ଣ ସୁସ୍ଥ, ଇସ୍ପାତ ପରି ଶକ୍ତ ଓ ଦୃଢ଼ ଶରୀର ଯେ ଲାଭ କରି ହେବ, ଏହା ଆମେ କିପରି ଆଶା କରିବା ? ଏ ବିଷୟରେ ପ୍ରତ୍ୟକ୍ଷ ଜ୍ଞାନ ଲାଭ କରିବା ପାଇଁ କ'ଣ ପୂର୍ବୋକ୍ତ ପରିବେଶରେ ବାସ କରୁଥିବା ବ୍ୟକ୍ତିଙ୍କର ଶରୀରକୁ ଦେଖିଲେ ବୁଝିହେବ ନାହିଁ ? ପଶୁ ହତ୍ୟାକାରୀକଂ ସେଇ ଓ ମାଂସ ବିକାଳୀମାନଙ୍କ ଶରୀରକୁ ଦେଖ, ବିଚାର କଲ ଦେଖି ସେମାନଙ୍କ ଶରୀର କିପରି ମହାନ ଆଧ୍ୟାତ୍ମିକ ବିଷୟ ଭଳି ଉଚ୍ଚ ଚିନ୍ତାରେ ନିଯୁକ୍ତ ହେବାକୁ ସମ୍ପୂର୍ଣ୍ଣ ଉପଯୁକ୍ତ ଯନ୍ତ୍ରରୂପେ ବିବେଚିତ ହେବ ? ସେମାନେ ଯୋଗାଉଥିବା ଖାଦ୍ୟ ଖାଇଲେ ଲୋକ ଅଳ୍ପ ବହୁତେ ଯେଉଁ ପ୍ରକାର ଶରୀର ଗଠନ କରନ୍ତି ସେମାନଙ୍କ ଶରୀର ତାହାର ପ୍ରକୃଷ୍ଟ ନମୁନା ମାତ୍ର । ଏ କଥା ସତ, ପାର୍ଥିବ ଶରୀର ପ୍ରତି ଯେତେ ନଜର ଦେଲେ ମଧ୍ୟ କେବଳ ତାହାଦ୍ୱାରା କେହି ଆଧ୍ୟାତ୍ମିକ ଜୀବନ ଲାଭ କରି ପାରିବ ନାହିଁ; କିନ୍ତୁ ଏପରି ଅପବିତ୍ର ଶରୀର ଧାରଣ କରି ଜଣେ କାହିଁକି ନିଜର ଅଗ୍ରଗତିକୁ ବ୍ୟାହତ କରିବ ? ତାର ନ୍ୟୂନାଧିକେ ଯାହା ଅବା ଶକ୍ତି ଅଛି ତାର ବିକାଶ ଲାଭ କରିବା ସମ୍ଭାବନାକୁ କାହିଁକି ଅକ୍ଷମ ଯନ୍ତ୍ର ହେତୁ ସୀମିତ, ନିଷ୍କ୍ରିୟ ଓ ଖର୍ବ କରିବ ? ଲଣ୍ଡନ ଭଳି ନଗର ବା ଯେ କୌଣସି ପାଶ୍ଚାତ୍ୟ ସହର ଭିତରେ ବିରକ୍ତି ବୋଧ ନ କରି ଜଣେ ବେଶି ଦୂର ଯାଇ ପାରିବ ନାହିଁ । କାରଣ ଶରୀର ଯେତିକି ମାର୍ଜିତ ହେବ ଇନ୍ଦ୍ରିୟଗୁଡ଼ିକ ସେତିକି କୋମଳ ଓ ତୀକ୍ଷ୍ଣ ହେବେ । ବର୍ତ୍ତମାନର ରୁକ୍ଷ ଜାନ୍ତବ ରୁଚିର ସଭ୍ୟତା ଭିତରେ ରହିବାକୁ ସେତିକି ଅଧିକ କଷ୍ଟ ହେବ । ବ୍ୟବସାୟିକରାସ୍ତାମାନଙ୍କରେ ବା ଛୋଟ ଛୋଟ ଗଳିମାନଙ୍କରେ ଗଲାବେଳେ ପ୍ରତି ମୋଡ଼ଜାଗାମାନଙ୍କରେ ମଦ ଦୋକାନ ଦେଖିବାକୁ ପାଇବ । ସେ ରାସ୍ତାମାନଙ୍କରେ ମଦ ଗନ୍ଧ ନ ଶୁଙ୍ଘି ଯିବା ଏକାନ୍ତ ଅସମ୍ଭବ । ଗୋଟିଏ

ଦୋକାନରୁ ଉଡୁଥିବା ପାନୀୟରୁ କଣିକା ଧାରଗୁଡ଼ିକ ଅନ୍ୟ ଦୋକାନର ପାନୀୟରୁ ଉଠୁଥିବା କଣିକା ପର୍ଯ୍ୟନ୍ତ ଲାଗି ଯାଇଥାଏ । ପ୍ରସିଦ୍ଧ ରାସ୍ତାଗୁଡ଼ିକ ମଧ୍ୟ ଏକାପରି ବିଷମୟ ହୋଇଥାନ୍ତି । ଏପରିକି କିଲିଖାନା ଓ ମାଂସ ଦୋକାନଗୁଡ଼ିକ ପାଖ ଦେଇ ଯିବାକୁ ପଡ଼େ । ଆମେ ଅବଶ୍ୟ ଜାଣୁ, ଯେତେବେଳେ ସଭ୍ୟତା ଆହୁରି ଆଗେଇ ଯିବ, ଏହି ଆବର୍ଜନା ଏକ ନିର୍ଦ୍ଦିଷ୍ଟ ଭାଗରେ ଏକାଠି ରହିବ ଓ ଏହାର ଗରାଖମାନଙ୍କ ପାଇଁ ସେହିଠାରୁ ଖର୍ଦ୍ଦି ବିକ୍ରିର ବ୍ୟବସ୍ଥା କରାହେବ । କିନ୍ତୁ ବର୍ତ୍ତମାନ ଏସବୁ ରାସ୍ତା କଡ଼େ କଡ଼େ ଥିବାରୁ ଏଥିରୁ କଣିକାମାନ ଉଡି ଆସି ଆମେ ରାସ୍ତାରେ ଗଲାବେଳେ ଆମ ଉପରେ ପଡୁଛି ଓ ଆମେମାନେ ତାକୁ ପ୍ରଶ୍ୱାସରେ ଗ୍ରହଣ କରୁଛୁଁ । ସୁସ୍ଥ ଶରୀର ଯେପରି ରୋଗର ଜୀବାଣୁମାନଙ୍କୁ ଶରୀରରେ ବଢ଼ିବାକୁ ସ୍ଥାନ ଦିଏ ନାହିଁ, ପବିତ୍ର ଶରୀର ସେହିପରି ଏଗୁଡ଼ିକୁ ଶରୀରରେ ବଢ଼ିବାକୁ ସୁବିଧା ଦିଏ ନାହିଁ । ଏହା ବ୍ୟତୀତ ଆମେ ଦେଖୁଛୁଁ ବୀଜାଣୁର ବିଶାଳ ବାହିନୀ ରକ୍ତ ବିଶୋଧନ କାର୍ଯ୍ୟରେ ଲାଗି ରହିଛନ୍ତି । ଜୀବନର ପ୍ରକୃତ ପ୍ରହରୀ ଏହି ସେନାବାହିନୀ । ପବିତ୍ର ଶରୀର ଭିତରକୁ କୌଣସି ବିଷାକ୍ତ କଣିକା ଆସିଲେ ତାକୁ ସଙ୍ଗେ ସଙ୍ଗେ ଆକ୍ରମଣ କରି ତାର ବିନାଶ ସାଧନ କରନ୍ତି । ବର୍ତ୍ତମାନ ଆମକୁ ଉତ୍ତମରୂପେ ବିଚାର କରି ବାଛି ନେବାକୁ ହେବ ଆମେ ଶରୀରରେ ଏହି ଶରୀର ରକ୍ଷୀ ବାହିନୀ ବଢ଼ାଇବା ଅଥବା ଦସ୍ୟୁ ଦଳରେ ଶରୀରକୁ ପୂର୍ଣ୍ଣ କରିବା ଯେଉଁମାନେ କି ଶରୀରର ସମସ୍ତ ସତ୍ ପଦାର୍ଥ ଲୁଣ୍ଠନ କରି ନେବେ । ଅପରିଷ୍କାର ପଦାର୍ଥ ଗ୍ରହଣ ନ କରିବା ପାଇଁ ଆମେ ଯେତିକି ଦୃଢ଼ ସଂକଳ୍ପ ରହିବୁଁ ଏପରି ବହିରାକ୍ରମଣ ବିରୁଦ୍ଧରେ ଆମ ଶରୀର ସେତିକି ଦୁର୍ଭେଦ୍ୟ ହୋଇ ରହିବ ।

ପୂର୍ବରୁ କୁହାଯାଇଛି ଶରୀର କିପରି ଅଭ୍ୟାସର ବଶବର୍ତ୍ତୀ ହେବା ପରେ ଏକ ସ୍ୱୟଂକ୍ରିୟ ଯନ୍ତ୍ର ପରି କାର୍ଯ୍ୟ କରିଯାଏ । ଏବେ କହିବା କଥା ହେଉଛି, ଆମେ ଶରୀରର ଏହି ଗୁଣଟିକୁ କିପରି କାମରେ ଲଗାଇବା । ଯୋଗ ଅଭ୍ୟାସ କରି ଉଚ୍ଚତର ଲୋକରେ ପ୍ରବେଶ କରିବାକୁ ଇଚ୍ଛା କରୁଥିବା ଶିକ୍ଷାର୍ଥୀକୁ ଯଦି ଜଣେ ବ୍ରହ୍ମବିଦ୍ୟାବିଦ୍ କହନ୍ତି, ''ତୁମେ ପ୍ରଥମେ ଶରୀର ଶୋଧନ କର, ତା' ପରେ ଯାଇଁ କୌଣସି ପ୍ରକାରର ଯୋଗ ଅଭ୍ୟାସ

କରିବାକୁ ଚେଷ୍ଟା କରି ପାରିବ; କାରଣ, ଅଶୁଦ୍ଧ ଓ ଅସଂଯତ ଶରୀରରେ ପ୍ରକୃତ ଯୋଗ ବାରୁଦ ଭାଣ୍ଡରେ ଅଗ୍ନିକଣା ଭଳି ଭୟଙ୍କର ।'' ତାହାହେଲେ ବୋଧହୁଏ ଏହାର ଉତ୍ତରରେ ସେ ଶୁଣିବାକୁ ପାଇ ପାରନ୍ତି ଯେ ଏପରି ଗୋଟିଏ କାର୍ଯ୍ୟ ପନ୍ଥା ଅନୁସରଣ କଲେ ତାଙ୍କର ସ୍ୱାସ୍ଥ୍ୟହାନୀ ଘଟିପାରେ । ଏଇଟି ନିଛକ ବାସ୍ତବ ଘଟଣା ଯେ ତୁମେ ଯେ ପର୍ଯ୍ୟନ୍ତ ଶରୀର ସୁସ୍ଥ ରହିବା ଭଳି କିଛି ଜିନିଷ ଶରୀରକୁ ଯୋଗାଉ ଥିବ, ତୁମେ କ'ଣ ଦେଉଛ ବା ନ ଦେଉଛ ସେ ବିଷୟରେ ତାର ବିଶେଷ ଖାତିର ରହିବ ନାହିଁ । ଯେ କୌଣସି ପବିତ୍ର ଓ ପୁଷ୍ଟିକର ଖାଦ୍ୟ ଗ୍ରହଣ କଲେ ଅଳ୍ପ ଦିନପରେ ତାହା ତାର ଅଭ୍ୟାସରେ ପଡ଼ିଯିବ । ଶରୀର ଏକ ସ୍ୱତଃ ପ୍ରବୃତ୍ତକୃତି ହୋଇ ଥିବାରୁ ତୁମେ ତାକୁ ଯେଉଁ ପଦାର୍ଥ ଗ୍ରହଣ କରିବାକୁ ବାରଣ କରିବ ସେତାହା ଚାହିଁବ ନାହିଁ । ସ୍ଥୂଳ ଓ ଅବାଞ୍ଛିତ ଖାଦ୍ୟପ୍ରତି ତାର ଇଚ୍ଛାକୁ ଯଦି ଦମନ କରି ଦେବ, ଅଳ୍ପ କାଳ ପରେ ସେ ଏ ପ୍ରକାର ଖାଦ୍ୟକୁ ଘୃଣା କରିବାକୁ ଆରମ୍ଭ କରିବ । ଜଣେ ସାଧାରଣ ରୁଚି ସମ୍ପନ୍ନ ବ୍ୟକ୍ତି ଯେପରି ଉଚ୍ଚ ପ୍ରଶଂସିତ ହେଉଥିବା ମାଂସଗୁଡ଼ିକ ପଚି ଯିବାର ଦେଖି ଘୃଣାରେ ବର୍ଜନ କରେ, ପବିତ୍ର ରୁଚି ସମ୍ପନ୍ନ ବ୍ୟକ୍ତି ସେହିପରି ସମସ୍ତ ପ୍ରକାର ସ୍ଥୂଳ ଖାଦ୍ୟ ପରିତ୍ୟାଗ କରିବ ।

ମନେକର ଜଣେ ଲୋକ ତା ଶରୀରକୁ ଦୀର୍ଘକାଳ ଧରି ଅପବିତ୍ର ଆହାର ଭୁଞ୍ଜାଉଛି, ତାହାହେଲେ ସେହି ପ୍ରକାର ଖାଦ୍ୟ ପାଇଁ ଶରୀର ଅଧିକାରୀ ଭଳି ଦାବୀ କରିବ ଏବଂ ମଣିଷ ମଧ୍ୟ ତାର ଚାହିଦାକୁ ମାନିନେବା ପାଇଁ ଆଗ୍ରହ କରିପାରେ । କିନ୍ତୁ ମଣିଷ ଯଦି ଶରୀରର ଦାବୀ ପ୍ରତି ଭ୍ରୂକ୍ଷେପ ନ କରି, ଶରୀର ଚାହୁଁଥିବା ବାଟରେ ନ ଯାଇ ତା ନିଜ ବାଟରେ ଚାଲେ, ତେବେ ଅଳ୍ପ କାଳ ମଧ୍ୟରେ ଦେଖି ଆଶ୍ଚର୍ଯ୍ୟ ହେବ, ଶାରୀର ତାର ମାଲିକକୁ ଚିହ୍ନି ପାରିଛି ଓ ନିଜକୁ ତା ଆଦେଶ ଅନୁଗାମୀ କରି ଦେଇଛି । ବର୍ତ୍ତମାନ ସେ ଦେଉ ଥିବା ଜିନିଷ ଗ୍ରହଣ କରିବାକୁ ଶ୍ରେୟସ୍କର ମଣୁଛି । ପବିତ୍ର ଆହାରକୁ ଆଦର କରୁଛି ଓ ଅପବିତ୍ର ଆହାର ପ୍ରତି ଅରୁଚି ପ୍ରଦର୍ଶନ କରୁଛି । ଅଭ୍ୟାସକୁ ସାହାଯ୍ୟକାରୀ ଭାବରେ ଯେପରି ବ୍ୟବହାର କରି ହେବ ବାଧା ଦେବାରେ ମଧ୍ୟ ସେହିପରି ଲଗାଇ ହେବ । ଶରୀର ଯେତେବେଳେ ତୁମକୁ ତାର ମାଲିକ ବୋଲି ବୁଝିବ ଏବଂ ସେ ବ୍ୟବହାର ପାଇଁ ଉଦ୍ଦିଷ୍ଟ ସାମାନ୍ୟ ଯନ୍ତ୍ର ହୋଇ ତୁମର

ଅଗ୍ରଗତିରେ ହସ୍ତକ୍ଷେପ କରିବା ତୁମେ ଚାହୁଁ ନାହଁ ବୋଲି ଜାଣିବ, ସେତେବେଳେ ସବୁ ବିଷୟରେ ସେ ତୁମ କଥା ମାନିବ । ସତ କହିଲେ ଶରୀର ପ୍ରଧାନ ଦୋଷୀ ନୁହେଁ, ଦୋଷୀ ହେଉଛି କାମନା ସ୍ୱଭାବ କାମଯୁକ୍ତ ପୂର୍ଣ୍ଣ ବୟସ୍କମାନଙ୍କ ଶରୀର ଏସବୁ ପଦାର୍ଥ ଦାବୀ କରେ । କିନ୍ତୁ ଶିଶୁଟିକୁ ଦେଖିଲେ ଜଣାଯାଏ ପୂର୍ଣ୍ଣ ବୟସ୍କ ଶରୀର ଯେଉଁ ନିକୃଷ୍ଟ ଧରଣର ଭୋଗରେ ମହାଆନନ୍ଦ ଅନୁଭବ କରନ୍ତି ସେସବୁ ପାଇଁ ଶିଶୁର ଦେହ ସ୍ୱତଃ ଆଗ୍ରହ ପ୍ରକାଶ କରେ ନାହିଁ । ଯଦି ଶିଶୁର ବଂଶଗତ ପରମ୍ପରା ଅତିଖରାପ ପାର୍ଥିବ ଧରଣର ହୋଇ ନଥାଏ ତେବେ ଶିଶୁର ଶରୀର ପ୍ରଥମେ ମଦମାଂସ ଗ୍ରହଣ କରିବାକୁ ସଂକୋଚ କରିଥାଏ । କିନ୍ତୁ ତା'ର ବୟୋଜ୍ୟେଷ୍ଠମାନେ ବଳପୂର୍ବକ ମାଂସ ଖୁଆନ୍ତି । ବାପା ମାଆ ତାଙ୍କର ଖାଇବାସାରି ବୈଠକରେ ଲଘୁଚାଖଣା (dessert) ବେଳେ ବଳ ପୂର୍ବକ ''ଟିକିଏ ମଣିଷ ହୋ'' କହି ତାଙ୍କ ଗ୍ଲାସରୁ ଟିକିଏ ଟିକିଏ ମଦ ପିଆନ୍ତି । ସେ ତା'ର ଅନୁକରଣ ଶକ୍ତି ବଳରେ ଓ ଅନ୍ୟମାନଙ୍କର ବାଧ ବାଧକତାରେ ପଡ଼ି ସେହି ସବୁ ଅପବିତ୍ର ରୁଚିରେ ଅଭ୍ୟସ୍ତ ହୋଇଯାଏ । ତା'ପରେ ଅବଶ୍ୟ ଅପବିତ୍ର ବସ୍ତୁରେ ରୁଚି ସୃଷ୍ଟି ହୁଏ, ପୁରାତନ କାମନା ବାସନା ସବୁ ଜାଗ୍ରତ ହୁଏ, ଯାହା ସବୁ ବୋଧହୁଏ ପୋଷଣ ଅଭାବରୁ ମଉଳି ଯାଇ ଥାଆନ୍ତା । ଯେଉଁ ସବୁ ଖାଦ୍ୟ ସେ ବରାବର ଖାଏ ତାହା ଦାବୀ କରିବା ଅଭ୍ୟାସରେ ପଡ଼ିଯାଏ । ଏସବୁ ଅତୀତରେ ଘଟିଥିବା ସତ୍ତ୍ୱେ ଅଭ୍ୟାସ ପରିବର୍ତ୍ତନ କରି ଦେଲେ, ଏପରି ଅପବିତ୍ର ବସ୍ତୁ ଦାବୀ କରୁଥିବା କଣିକାଗୁଡ଼ିକ ଝଡ଼ିପଡ଼େ । ଶରୀର ଅଭ୍ୟାସ ପରିବର୍ତ୍ତନ ପୂର୍ବରୁ ଯେଉଁ ବସ୍ତୁ ପାଇଲେ ଆନନ୍ଦ ହେଉଥିଲା ତାହାର ଲେଶମାତ୍ର ଗନ୍ଧ ପାଇଲେ ବିରକ୍ତି ପ୍ରକାଶ କରେ । ଏହି ସବୁ ସଂସ୍କାର କରିବାରେ ପ୍ରକୃତ କଷ୍ଟ ରହିଛି କାମନାରେ, ଶରୀରରେ ନୁହେଁ । ତୁମେ ଏହା କରିବାକୁ ଚାହୁଁ ନାହଁ, ଯଦି ଚାହିଁବ କରି ଦେବ । ତୁମେ ନିଜକୁ କହୁଛ, ''ବୋଧହୁଏ ଏସବୁର ବିଶେଷ ଆବଶ୍ୟକତା ନାହିଁ, ମୋର ମାନସିକ ଗୁଣ ନାହିଁ, ଏ ବିଷୟରେ କୌଣସି ପରିବର୍ତ୍ତନ ଆଣିବା ଭଳି ଅଗ୍ରଗତି ମୁଁ କରି ନାହିଁ ।'' ତୁମେ ଯଦି ତୁମ ସାଧନା ସୀମା ଭିତରେ ଥିବା ଉଚ୍ଚତମ ଅବସ୍ଥାରେ ଜୀବନ ଯାପନ କରିବାର ପ୍ରଚେଷ୍ଟା ନ କର ଏବଂ କାମନାକୁ ତୁମର ଅଗ୍ରଗତିରେ ଅନ୍ତରାୟ ହେବାକୁ ଦିଅ, ତେବେ ତୁମେ କେବେ ହେଲେ ଅଗ୍ରଗତି

କରି ପାରିବ ନାହିଁ । ତୁମେ କହୁଛ ''ଭୂବୀୟ ଦୃଷ୍ଟି ଲାଭ କଲେ କେଡ଼େ ଖୁସି ହୁଅନ୍ତି, କାମନା ଶରୀରରେ ଭ୍ରମଣ କଲେ କେତେ ଭଲ ହୁଅନ୍ତା;'' କିନ୍ତୁ ଅସଲ ବେଳକୁ 'ଭଲ' ଭୋଜି ଖାଇବାକୁ ଆଗୁସାର ହେଉଛ । ଅଶୁଦ୍ଧ ଖାଦ୍ୟ ବର୍ଜନ କଲେ ଯଦି ବର୍ଷ ଶେଷକୁ ଦଶଲକ୍ଷ ପାଉଣ୍ଡ ପୁରସ୍କାର ମିଳନ୍ତା ତାହାହେଲେ କେତେ ସହଜରେ ଏସବୁ ଅସୁବିଧା ଦୂର ହୋଇ ନଯାଆନ୍ତା । ବିନା ମଦ ମାଂସରେ ଜୀବନ ଧାରଣ କରିବା ପାଇଁ ପଥ ମିଳି ଯାଆନ୍ତା । କିନ୍ତୁ ପୁରସ୍କାରଟି ଉଚ୍ଚତର ଜୀବନ ରୂପକ ଅମୂଲ୍ୟ ସମ୍ପଦ ହୋଇଥିବାରୁ ଅସୁବିଧା ଗୁଡ଼ିକ ଅଲଂଘ୍ୟ ହୋଇ ପଡୁଛି । ଲୋକମାନେ ଯାହା କାମନା କରୁ ଥିବାର ଛଳନା କରନ୍ତି, ପ୍ରକୃତରେ ତାହା ଚାହୁଁ ଥିଲେ ଆମର ପାରିପାର୍ଶ୍ୱିକ ଅବସ୍ଥା ବର୍ତ୍ତମାନ ଅପେକ୍ଷା ବହୁତ ଶୀଘ୍ର ବଦଳି ଯାଆନ୍ତା । କିନ୍ତୁ ସେମାନେ ଖାଲି ଛଳନା କରନ୍ତି । ସେମାନେ ବଡ଼ ଆଗ୍ରହୀ ବୋଲି ଏପରି ଛଳନା କରନ୍ତି ଯେ ତଦ୍ୱାରା ନିଜକୁ ମଧ୍ୟ ଠକି ଦିଅନ୍ତି, ଏବଂ ଜୀବନ ପରେ ଜୀବନ ଉନ୍ନତି ନ କରି ହଜାର ହଜାର ବର୍ଷ କଟାଇ ଥାନ୍ତି । କୌଣସି ଏକ ଜୀବନ କାଳରେ ଭାବି ବସନ୍ତି ଅନ୍ୟ ଜଣେ ଗୋଟିଏ ଜୀବନକାଳ ଭିତରେ ଆଶାତୀତ ଉନ୍ନତି କରି ଥିବାବେଳେ ତାଙ୍କର କାହିଁକି ଆଦୌ ଉନ୍ନତି ହେଉ ନାହିଁ ? ଜଣେ ନିଷ୍ଠାପର ଲୋକ କ୍ଷଣିକ ଉନ୍ମାଦନା ଗ୍ରସ୍ତ ନ ହୋଇ ଅଧ୍ୟବସାୟରେ ଅବିଚଳିତ ରହିଲେ ସେ ଯେଉଁ ପ୍ରକାର ଉନ୍ନତି କାମନା କରିବ ସେହିପରି ଉନ୍ନତି ଲାଭ କରି ପାରିବ । କିନ୍ତୁ ଯେଉଁ ଲୋକ କେବଳ ଛଳନା କରେ ସେ ଜନ୍ମ ଜନ୍ମାନ୍ତର ଧରି ଘଣା ବୁଲୁଥାଏ ।

ସେ ଯାହାହେଉ, ଏହି ଶରୀରକୁ ପବିତ୍ର କରିବା ଉପରେ ସମସ୍ତ ପ୍ରକାର ଯୋଗାଭ୍ୟାସ ପାଇଁ ପ୍ରସ୍ତୁତି ପ୍ରକ୍ରିୟା ନିର୍ଭର କରେ, ଯଦିଓ ଏତିକି ମାତ୍ର ସମ୍ପୂର୍ଣ୍ଣ ପ୍ରସ୍ତୁତ ପ୍ରକ୍ରିୟା ନୁହେଁ ତଥାପି ଏହା ଏକ ଅପରିହାର୍ଯ୍ୟ ଅଙ୍ଗ । ଆମ ଚେତନାର ନିମ୍ନତମ ବାହନ ସ୍ଥୂଳ ଶରୀର ସମ୍ବନ୍ଧରେ ଏତିକି କହିଲେ ଯଥେଷ୍ଟ ହେବ ।



# ଇଥରୀୟ ଯମଜ

ଆଧୁନିକ ପଦାର୍ଥ ବିଜ୍ଞାନ ମତରେ ସମସ୍ତ ପ୍ରକାର ଦୈହିକ ପରିବର୍ତ୍ତନ- ତାହା ମାଂସପେଶୀରେ ହେଉ ଜୀବକୋଷରେ ବା ସ୍ନାୟୁମଣ୍ଡଳରେ ହେଉ, ସେ ସମସ୍ତ ବୈଦ୍ୟୁତିକ କ୍ରିୟା ସମନ୍ୱିତ । ଶରୀରରେ କ୍ରମାଗତ ଭାବେ ଚାଲିଥିବା ରାସାୟନିକ ପ୍ରକ୍ରିୟା ସମ୍ପର୍କରେ ମଧ୍ୟ ଏକା କଥା କୁହାଯାଇ ପାରେ । ଅତି ସୂକ୍ଷ୍ମ ତଡ଼ିତ୍ ମାପକ "ଗାଲ୍‌ଭାନୋମିଟର" ଯନ୍ତ୍ର ସାହାଯ୍ୟରେ ସଯତ୍ନ ପରୀକ୍ଷା ବଳରେ ଏ ବିଷୟରେ ଯଥେଷ୍ଟ ପ୍ରମାଣ ମିଳିଛି । ଯେଉଁଠାରେ ବୈଦ୍ୟୁତିକ କ୍ରିୟା ସଂଘଟିତ ହେବ ସେଠାରେ ନିଶ୍ଚୟ ଇଥର ରହିଥିବ । ସେଥିପାଇଁ ବୈଦ୍ୟୁତିକ ସ୍ରୋତର ଅସ୍ତିତ୍ୱ ପ୍ରମାଣ କରିଦିଏ ଯେ ଶରୀରରେ ଇଥର ବିଦ୍ୟମାନ, ଯାହାକି ଓତପ୍ରୋତ ଭାବରେ ଭେଦ କରି ରହିଛି ଓ ସମସ୍ତ ଆବୃତ କରି ରହିଛି । କୌଣସି ପାର୍ଥିବ ପରମାଣୁ କଥା ଅନ୍ୟ ପରମାଣୁ କଣା ସହିତ ଲାଗି ନାହିଁ । କିନ୍ତୁ ପ୍ରତ୍ୟେକ ପରମାଣୁ ଇଥର ଭୂମିରେ ଝୁଲୁ ଅଛି । ପାଶ୍ଚାତ୍ୟ ବୈଜ୍ଞାନିକମାନେ ଯାହାକୁ ଅପରିହାର୍ଯ୍ୟ ଉପପାଦ୍ୟ ଭାବରେ ଗ୍ରହଣ କରୁଛନ୍ତି, ପ୍ରାଚ୍ୟ ବିଜ୍ଞାନର ତାଲିମ ପ୍ରାପ୍ତ ଶିଷ୍ୟମାନେ ତାହାକୁ ପରୀକ୍ଷାଯୋଗ୍ୟ ବସ୍ତୁ ରୂପେ ଦାବୀ କରନ୍ତି । କାରଣ ଇଥର ଟେବୁଲ ଚୌକି ପରି ସେମାନଙ୍କର ଦୃଷ୍ଟିଗମ୍ୟ । କେବଳ ତାକୁ ଦେଖିବାକୁ ହେଲେ ଏହି ପାର୍ଥିବ ଦୃଷ୍ଟି ଶକ୍ତିଠାରୁ ଏକ ଅଲଗା ଦୃଷ୍ଟି ଶକ୍ତି ଦରକାର । ଆଗରୁ କୁହାଯାଇଛି, ଇଥରର ଚାରି ଗୋଟି ବିଭାଗ ଅଛି ଏବଂ ଏହାର ସୂକ୍ଷ୍ମତମ ବିଭାଗଟି ଶେଷ ପର୍ଯ୍ୟାୟର ପାର୍ଥିବ ପରମାଣୁ ଦ୍ୱାରା ଗଠିତ । ଏହି ପରମାଣୁ କିନ୍ତୁ ଆମର ରାସାୟନିକ ପରମାଣୁ ନୁହେଁ, କାରଣ, ରାସାୟନିକ ପରମାଣୁ ଯୌଗିକ ପଦାର୍ଥ । ଏ ପରମାଣୁ ଶେଷ ପର୍ଯ୍ୟାୟର ପରମାଣୁ କହିବାର ତାତ୍ପର୍ଯ୍ୟ ହେଉଛି ଏହାକୁ ଅଧିକ ବିଶ୍ଳେଷଣ କଲେ ଏହା କାମନା ଜଗତର ପରମାଣୁରେ ପରିଣତ ହୋଇ ଯିବ ।

ଆମର ଆଲୋଚ୍ୟ ଇଥରୀୟ ଯମଜ ଉକ୍ତ ଚାରିଜାତି ଇଥରରେ ତିଆରି । ଏହା ସ୍ଥୂଳ ଶରୀରରେ କଠିନ, ତରଳ ଓ ବାଷ୍ପୀୟ ପଦାର୍ଥ ଭିତରେ ଓତପ୍ରୋତ ଭାବରେ ଜଡ଼ିତ ରହିଛି । ତାର ପ୍ରତ୍ୟେକ କଣିକାକୁ ଇଥରୀୟ

ଖୋଳରେ ଆବୃତ୍ତ କରି ସ୍ଥୂଳ ଶରୀରର ଠିକ୍ ଦ୍ୱିତୀୟ ରୂପ ବା 'ଯମଜ' ଭାବରେ ରହିଛି । ଏହି ଇଥରୀୟ ଯମଜ ତାଲିମ ପ୍ରାପ୍ତ (ଅତୀନ୍ଦ୍ରିୟ ଦୃଷ୍ଟି ସମ୍ପନ୍ନ) ଆଖିକୁ ସମ୍ପୂର୍ଣ୍ଣ ରୂପେ ଦେଖାଯାଏ । ଏହାର ରଙ୍ଗ ଧୂଷର ବାଇଗଣିଆ । ସ୍ଥୂଳ ଶରୀର ଗଠନ କରୁଥିବା ଦାନାମାନଙ୍କର ସ୍ଥୂଳତା ବା ସୂକ୍ଷ୍ମତା ଅନୁପାତରେ ଏହାର ଉପାଦାନର ସ୍ଥୂଳତା ବା ସୂକ୍ଷ୍ମତା ହୋଇଥାଏ । ଯେପରି କଠିନ, ତରଳ ଓ ବାଷ୍ପୀୟ ପଦାର୍ଥ ଦ୍ୱାରା ସ୍ଥୂଳ ଶରୀର ଗଠିତ ହୋଇଛି । ସେହିପରି ଚାରିପ୍ରକାର ଇଥର ଦ୍ୱାରା ଏହି ଯମଜଟି ଗଠିତ । ସ୍ଥୂଳତର ଇଥର ପରିମାଣ ଅନୁସାରେ ଏ ଶରୀର ସୂକ୍ଷ୍ମ ବା ସ୍ଥୂଳ ହୋଇଥାଏ । ଲକ୍ଷ୍ୟ କରିବାର ଗୋଟିଏ ପ୍ରଧାନ ବିଷୟ ହେଉଛି, ଇଥରୀୟ ଯମଜର ଗୁଣରେ ପରିବର୍ତ୍ତନ ଠିକ୍ ସ୍ଥୂଳ ଶରୀର ଅନୁରୂପ ହୋଇଥାଏ । ସେଥିପାଇଁ କୌଣସି ଆଗ୍ରହୀ ଲୋକ ସ୍ୱେଚ୍ଛାରେ ଯତ୍ନ ସହିତ ସ୍ଥୂଳ ଶରୀରର ମାର୍ଜନା କଲେ ଇଥରୀୟ ଯମଜ ତା ଅଜ୍ଞାତରେ ସ୍ଥୂଳ ଶରରକୁ ଅନୁସରଣ କରି ଅନାୟାସରେ ପରିମାର୍ଜିତ ହୋଇଯାଏ ।

ଏହି ଇଥରୀୟ ଯମଜ ସାହାଯ୍ୟରେ ଜୀବନୀ ଶକ୍ତି ବା ପ୍ରାଣ ସଂଚାରିତ ହୋଇ ଶରୀରର ସ୍ନାୟୁମଣ୍ଡଳରେ ପ୍ରବହିତ ହୁଏ । ତଦ୍ଦ୍ୱାରା ସଂଜ୍ଞାବହା ଓ ଚେଷ୍ଟାବହା ସ୍ନାୟୁଗୁଡ଼ିକ ଶକ୍ତି ଲାଭ କରି ବାହ୍ୟ ସଂଯୋଗ ଜନିତ ସଂବେଦନ ଭିତରକୁ ବହନ କରି ନେବାକୁ ଓ ଭିତରୁ କ୍ରିୟା ଶକ୍ତି (Motor force) ବାହାରକୁ ପ୍ରସାରିତ କରିବାକୁ ସକ୍ଷମ ହୁଅନ୍ତି। ଚିନ୍ତନ, ଚଳନ ଓ ଅନୁଭବ ଶକ୍ତି ସମୂହ ପାର୍ଥିବ ଶରୀରର ସ୍ଥୂଳ ରୂପ ବା ଇଥରୀୟ ଯମଜରେ ବିଦ୍ୟମାନ ନ ଥାନ୍ତି । ଏଗୁଡ଼ିକ ଅନ୍ତର୍ନିହିତ ସୂକ୍ଷ୍ମତରଶରୀରରେ ଥିବା ଅହଂକାରର କାର୍ଯ୍ୟ । ଜୀବନୀ ଶକ୍ତି ସ୍ନାୟୁତନ୍ତୁ ଓ ଜୀବକୋଷ ଭିତର ଦେଇ ସଂଚାରିତ ହେବା ଦ୍ୱାରା ପାର୍ଥିବ ସ୍ତରରେ ତାହାର ପ୍ରକାଶ ଘଟିଥାଏ । ଶ୍ରୀ ଶଙ୍କରାଚାର୍ଯ୍ୟଙ୍କ ମତରେ ପ୍ରାଣ ଆତ୍ମାର କ୍ରିୟା ଶକ୍ତି । ଏହି ପ୍ରାଣ ଶକ୍ତି ସଂଚାର ପାଇଁ ମାଧ୍ୟମ ରୂପେ ଇଥରୀୟ ଯମଜ କାର୍ଯ୍ୟ କରେ ଓ ଆମ ସାହିତ୍ୟରେ 'ପ୍ରାଣର ବାହନ' ବୋଲି ବର୍ଣ୍ଣିତ ହୋଇଛି । ଗୋଟିଏ ବଡ଼ ଜାଣିବା ବିଷୟ ହେଉଛି, ମଦ୍ୟରୁ ଉଡୁଥିବା ବାୟବୀୟ ଉପାଦାନ ପ୍ରତି ଏହି ଇଥରୀୟ ଯମଜର ଗଭୀର ଆଗ୍ରହ ପ୍ରବଣତା ରହିଛି ।

# ପାର୍ଥିବ ଶରୀର ସମ୍ପର୍କରେ କେତେକ ଘଟଣା

କୌଣସି ଲୋକ ''ଶୋଇ ପଡ଼ିଲେ'' ତାର ଜୀବାତ୍ମା ପାର୍ଥିବ ଶରୀରରୁ ବାହାରି ଯାଏ ଏବଂ ଶୋଇବା ଦ୍ୱାରା ପରବର୍ତ୍ତୀ ଦିନର କାର୍ଯ୍ୟ ପାଇଁ ଶକ୍ତି ସଂଗ୍ରହ କରିବା ନିମନ୍ତେ ଶରୀରକୁ ଛାଡ଼ି ଦିଏ । ତଦ୍ଦ୍ୱାରା ସ୍ଥୂଳ ଶରୀର ଓ ଇଥରୀୟ ଯମଜଙ୍କୁ ନିଜ ନିଜ କୌଶଳ ଅନୁସାରେ କାମ କରିବାକୁ ଓ ନିଜର ଗଠନ ଓ ଅଭ୍ୟାସ ବଳରେ ନିଜ ପ୍ରତି ଆକର୍ଷିତ କରି ଆଣିଥିବା ପ୍ରଭାବ ସବୁ ସଂଚାରିତ କରିବା ସୁବିଧା ମିଳିଯାଏ । ସେହି ଲୋକର ଦୈନନ୍ଦିନ ଜୀବନରେ ତାର ଜୀବାତ୍ମା ସୃଷ୍ଟି କରିଥିବା ବା ସଂଗ୍ରହ କରିଥିବା ସଂକଳ୍ପରୂପ (thought forms) ଗୁଡ଼ିକ ସହିତ ମେଳ ଖାଇବା ଭଳି ସଂକଳ୍ପରୂପର ସ୍ରୋତ ସବୁ ଭୁବ ଲୋକରୁ ପ୍ରବାହିତ ହୋଇ ତାର ସ୍ଥୂଳ ଓ ଇଥରୀୟ ମସ୍ତିଷ୍କର ବାହାରେ ଭିତରେ ସଂଚାରିତ ହୁଏ । ଜାଗ୍ରତ ଅବସ୍ଥାରେ ଜୀବାତ୍ମା ସଂଗ୍ରହ କରିଥିବା ସ୍ପନ୍ଦନଗୁଡ଼ିକର ସ୍ୱତଃ ପୁନରାବୃତ୍ତି ହୁଏ । ଏପରି ପୁନରାବୃତ୍ତି କାଳରେ ତାହା ସହିତ ମିଳିତ ହୋଇ ଏହି ସଂକଳ୍ପରୂପ ଗୁଡ଼ିକ ପରସ୍ପର ସଙ୍ଗତି ବିହୀନ ସ୍ୱପ୍ନ ସୃଷ୍ଟି କରିଥାଆନ୍ତି । ଏପରି ସ୍ୱପ୍ନ ସହିତ ଆମେମାନେ ସମସ୍ତେ ପରିଚିତ । ପାର୍ଥିବ ଶରୀର ସ୍ୱତନ୍ତ୍ର ଭାବରେ ରହିଲେ ତାର କାର୍ଯ୍ୟ ପଦ୍ଧତି କି ପ୍ରକାରର ହେବ ତାହା ଏହି ସବୁ ଅସଂଲଗ୍ନ ସ୍ୱପ୍ନରୁ ବୁଝା ପଡେ । କୌଣସି କ୍ରମ ବା ପୂର୍ବାପର ସଙ୍ଗତି ନ ଥାଇ ଆଂଶିକ ଭାବରେ ଏହା ଅତୀତ ସ୍ପନ୍ଦନର ପୁନରାବୃତ୍ତି କରିପାରେ । ସେଗୁଡ଼ିକ ଯେତେ ଅଦ୍ଭୁତ ବା ଅଯୌକ୍ତିକ ହେଉ ପଛେ କେ ସେ ଯେପରି ଭାବରେ ବାହାରି ଆସନ୍ତି ତାଙ୍କୁ ସେହିପରି ଯୋଡ଼ାଯୋଡ଼ି କରି ଛାଡ଼ିଦିଏ । ଅସମ୍ଭବତା ବା ବିଚାର ମୂଢତା ଅନୁଭବ କରିବା ଶକ୍ତି ତାର ନାହିଁ । ସେ କେବଳ କ୍ୟାଲିଡୋସ୍କୋପ ପରିଗୁଡ଼ିଏ ରଙ୍ଗିନ ଚିତ୍ର ପରିବେଷଣ କରିବାରେ ସନ୍ତୁଷ୍ଟ ହୁଏ । କ୍ୟାଲିଡୋସ୍କୋପ ଚିତ୍ରରେ ପରିବେଷଣର ଯେଉଁ ବିଧିବଦ୍ଧତା ତାହା ସେଥିରେ ନଥାଏ । ଏହି ସବୁ ଦେଖି ଜାଣିହୁଏ ସ୍ଥୂଳ ଓ ଇଥରୀୟ ମସ୍ତିଷ୍କ କେବଳ ଚିନ୍ତା ଶକ୍ତିର ବାହକ ଯନ୍ତ୍ର । ତାର ଜନ୍ମଦାତା ନୁହେଁ । କାରଣ ସେମାନଙ୍କୁ ସ୍ୱାଧୀନ ଭାବରେ ଛାଡ଼ି ଦେଲେ ଆମେ ଦେଖି ପାରିବା ତାଙ୍କର ସୃଷ୍ଟି କେଡ଼େ ପ୍ରମାଦ ପୂର୍ଣ୍ଣ ଓ ଶୃଙ୍ଖଳା ହୀନ ।

ଶୋଇବା ଅବସ୍ଥାରେ ଚିନ୍ତନକାରୀ ଜୀବାତ୍ମା ଏହି ଶରୀରର ସ୍ଥୂଳ ଓ ସୂକ୍ଷ୍ମ (ଇଥରୀୟ) ଉଭୟ ଭାଗକୁ ଏକତ୍ର ରଖି ଦେଇ ସେଥିରୁ ବାହାରି ଯାଏ । ଏହା ଅବଶ୍ୟ ମୃତ୍ୟୁ ସମୟରେ ଶେଷ ଥର ପାଇଁ ବାହାରି ଯାଏ । ଶୋଇବା ସମୟରେ ଜୀବାତ୍ମା ବାହାରି ଯିବା ଓ ମୃତ୍ୟୁ ବେଳେ ବାହାରି ଯିବା ଭିତରେ ପାର୍ଥକ୍ୟ ହେଉଛି ମୃତ୍ୟୁ ବେଳେ ଜୀବାତ୍ମା ଇଥରୀୟ ଯମଜକୁ ସ୍ଥୂଳ ଶରୀରରୁ ସମ୍ପୂର୍ଣ୍ଣ ରୂପେ ବିଚ୍ଛିନ୍ନ କରିଦିଏ । ତଦ୍ଦ୍ୱାରା ପାର୍ଥିବ ଶରୀରର ପୂର୍ଣ୍ଣତା ଅଭାବରୁ ତହିଁରେ ପ୍ରାଣର ସଂଚାର ସମ୍ଭବ ହୁଏ ନାହିଁ । ଇଥରୀୟ ଯମଜଟି ଭୁବ ଲୋକକୁ ଯାଇ ପାରିବ ନାହିଁ । ତେଣୁ ଜୀବାତ୍ମା ଅଳ୍ପ କାଳ ମଧ୍ୟରେ ଜୀବନର ସାଥି ସ୍ଥୂଳ ଶରୀର ପରି ଇଥରୀୟ ଯମଜକୁ ମଧ୍ୟ ମିଳେଇ ଯିବା ପାଇଁ ଛାଡ଼ି ଦିଏ । ଅନେକ ସମୟରେ ମୃତ୍ୟୁର ଅବ୍ୟବହିତ ପରେ ମୃତ ଦେହର ଅନତିଦୂରରେ ଥିବା ବନ୍ଧୁମାନଙ୍କୁ ଇଥରୀୟ ଶରୀର ଦେଖା ଦେଇଥାଏ । ଏହା ପାର୍ଥିବ ବସ୍ତୁ ହୋଇଥିବାରୁ ସହଜରେ ଦେଖା ପଡ଼େ । କିନ୍ତୁ ଏହା ସ୍ୱଭାବତଃ ଚେତନା ଶକ୍ତି ରହିତ ହୋଇଥିବାରୁ କେବଳ ଦେଖା ଦେବା ବ୍ୟତୀତ କଥାବାର୍ତ୍ତା ଆଦି କରିପାରେ ନାହିଁ । ସ୍ନାୟୁ ମଣ୍ଡଳରେ ସାମାନ୍ୟ ଉତ୍ତେଜନା ହେଲେ, ଦୃଷ୍ଟି ଶକ୍ତିରେ ଏହାକୁ ଦେଖିବା ଭଳି ତୀକ୍ଷ୍ଣତା ଆସିଯାଏ । କବରଖାନା ଅଗଣାରେ ଭୂତ ଦର୍ଶନ କରିବାର କାରଣ ହେଉଛି ଏହି ଇଥରୀୟ ଯମଜ । ସ୍ଥୂଳ ଶରୀର ପୋତା ହୋଇଥିବା ସ୍ଥାନ ନିକଟରେ ଏହା ବୁଲେ ଓ କାମନା ଶରୀର ଅପେକ୍ଷା ସହଜରେ ସ୍ଥୂଳ ଦୃଷ୍ଟିରେ ଦେଖାପଡ଼େ । ଏଥିରୁ ସ୍ପଷ୍ଟ ହୁଏ ସ୍ଥୂଳ ଶରୀର ଓ ତାର ଇଥରୀୟ ଯମଜ ମୃତ୍ୟୁ ପରେ ମଧ୍ୟ ସମ୍ପୂର୍ଣ୍ଣ ରୂପେ ବିଚ୍ଛିନ୍ନ ହୁଅନ୍ତି ନାହିଁ; ପରସ୍ପରର ଅଳ୍ପ କେତେ ଫୁଟ ଦୂରରେ ରହନ୍ତି ।

ସାଧାରଣ ଲୋକଙ୍କ ପକ୍ଷରେ ଏପରି ସ୍ଥୂଳ ଓ ଇଥରୀୟ ଶରୀରର ବିଚ୍ଛେଦ ମୃତ୍ୟୁରେ ଘଟିଥାଏ । କିନ୍ତୁ ପ୍ରେତ ଡାକିବାରେ ମାଧ୍ୟମ ହୋଇ ପାରୁଥିବା ସ୍ୱଭାବର କେତେକ ଅସ୍ୱାଭାବିକ ଶାରୀରିକ ଗଠନ ଯୁକ୍ତ ଲୋକ (Mediums for spirit call) ମାନଙ୍କର ଏପରି ଶରୀର ବିଭାଜନ ଆଂଶିକ ଭାବରେ ଜୀବିତାବସ୍ଥାରେ ମଧ୍ୟ ଘଟିଥାଏ । ଏହା ଅତି ବିପଜ୍ଜନକ । ଅବଶ୍ୟ ଗୋଟିଏ ସୌଭାଗ୍ୟର କଥା ହେଉଛି ଏପରି ଭୟଙ୍କର ସ୍ନାୟୁ ପୀଡ଼କ ଓ ବିଶୃଙ୍ଖଳା ଜନକ ରୋଗଗ୍ରସ୍ତ ଲୋକଙ୍କ ସଂଖ୍ୟା ଅତି ଅଳ୍ପ । ଯେତେବେଳେ

ଇଥରୀୟ ଯମଜ ବାହାରକୁ ଅଣାଯାଏ; ଏହା ସ୍ୱତଃ ଦୁଇ ଭାଗରେ ବିଦୀର୍ଣ୍ଣ ହୋଇଯାଏ । କାରଣ ଏହା ପ୍ରାଣ ବାୟୁ ସଂଚାରର ଭୂମି ହୋଇଥିବାରୁ ପ୍ରାଣୀକୁ ମାରି ନ ଦେଲେ ସମ୍ପୂର୍ଣ୍ଣ ରୂପେ ଶରୀରରୁ ବାହାରକୁ ବାହାର କରିହୁଏ ନାହିଁ । ଏହାର ଆଂଶିକ ସଂହରଣ ମଧ୍ୟ ସ୍ଥୂଳ ଶରୀରକୁ ଶକ୍ତିହୀନ ଓ ତନ୍ଦ୍ରାଭିଭୂତ କରି ପକାଏ ଏବଂ ଜୀବନ କ୍ରିୟା ପ୍ରାୟ ସ୍ଥଗିତ ହୋଇଯାଏ । ବିଚ୍ଛିନ୍ନ ଇଥରୀୟ ଅଂଶ ଦୁଇଟିର ପୁନଃ ମିଳନ ପରେ ଲୋକ ଅତ୍ୟନ୍ତ ଅବସନ୍ନ ଦେଖାଯାଏ । ଉଭୟ ଅଂଶ ଉତ୍ତମ ରୂପେ ମିଳିତ ହୋଇ ପାର୍ଥିବ ଶରୀରରେ ସାଧାରଣ ଅବସ୍ଥା ପ୍ରତ୍ୟାବର୍ତ୍ତନ ନ କରିବା ପର୍ଯ୍ୟନ୍ତ ମିଡ଼ିୟମର ଶରୀର ସଂକଟାପନ୍ନ ଅବସ୍ଥାରେ ଥାଏ । ସାଧାରଣ ମିଡ଼ିୟମ ଉପସ୍ଥିତିରେ ଘଟୁଥିବା ଅଧିକାଂଶ ଘଟଣା ଘଟିବା ସମ୍ପର୍କରେ ଇଥରୀୟ ଯମଜକୁ ବାହାରକୁ ବାହାର କରି ଆଣିବା ଦରକାର ହୋଇ ନଥାଏ । କିନ୍ତୁ ଯେଉଁ ମିଡ଼ିୟମ ଦେହାନ୍ତ ହୋଇଥିବା ବ୍ୟକ୍ତିମାନଙ୍କର ଜଡ଼ରୂପ ଦେଖାଇବା କାର୍ଯ୍ୟରେ ସାହାଯ୍ୟ କରି ଖ୍ୟାତି ଲାଭ କରିଥାଆନ୍ତି, ସେମାନଙ୍କ ପାଇଁ ଏହା ପ୍ରୟୋଜନ ହୋଇଥାଏ ।

ମୁଁ ଜାଣିବାରେ ମି: ଏଗ୍ଲିଣ୍ଟନ (Mr. Eglinton) ଯେପରି ଆଶ୍ଚର୍ଯ୍ୟ ଜନକ ଭାବରେ ପାର୍ଥିବ ଶରୀରକୁ ବିଚ୍ଛିନ୍ନ କରି ଦେଖାଇ ଦେଇ ପାରୁଥିଲେ ତାହା ବିରଳ । ତାଙ୍କର ଇଥରୀୟ ଯମଜ ତାଙ୍କ ବାମ ପାଖରୁ ଧୀରେ ଧୀରେ ବାହରିବା ଦେଖା ଯାଉଥିଲା ଏବଂ ସ୍ଥୂଳ ଶରୀର ସଙ୍କୁଚିତ ହୋଇ ଯାଉଥିଲା । ମି. ହସ୍କଙ୍କ ପକ୍ଷରେ ମଧ୍ୟ ସେହି କଥା ଦେଖା ଯାଉଥିଲା । ମି. ହସ୍କଙ୍କ ସ୍ଥୂଳ ଶରୀର ଏପରି ଶୁଖିଯାଏ ଯେ ତାଙ୍କର ପୋଷାକ ସବୁ ଢ଼ିଲା ହୋଇଯାଏ । ଥରେ ମି: ଏଗ୍ଲିଣ୍ଟନଙ୍କ ଶରୀର ଶୁଖିଯାଇ ଏତେ ଛୋଟ ହୋଇଗଲା ଯେ ସ୍ଥୂଳତା ଧାରଣ କରି ଥିବା ସୂକ୍ଷ୍ମ ଦେହ ତାକୁ ଉଠାଇ ନେଇ ଦର୍ଶନକମାନଙ୍କ ପାଖରେ ପରୀକ୍ଷା ପାଇଁ ବୁଲାଇ ଆଣିଲା । ଏହା ଅବଶ୍ୟ ଅତି ଦୁର୍ଲ୍ଲଭ ଘଟଣା ଭିତରୁ ଗୋଟିଏ, ଯେଉଁଥିରେ କି ମିଡ଼ିୟମ ଓ ଜଡ଼ ଶରୀର ଧାରୀ ବିଦେହୀ (materialised form) ଉଭୟଙ୍କୁ ଏକା ବେଳେ ପରୀକ୍ଷା କରି ଦେଖିବା ଭଳି ଆଲୋକରେ ଦେଖିବାର ସୁଯୋଗ ମିଳେ । ଏପରି ଶୁଖିଯିବାର କାରଣ ହୋଇପାରେ ଶରୀରରୁ କୌଣସି ଏକ ବିଚରଣକ୍ଷମ ସ୍ଥୂଳ ବସ୍ତୁ ବାହାରି ଯାଏ, ସମ୍ଭବତଃ କୌଣସି ତରଳ ବସ୍ତୁର ଅଂଶ ହୋଇପାରେ । ମୁଁ ଜାଣିବାରେ ଏ ବିଷୟରେ ଅଧିକ ବିଶ୍ଳେଷଣ କରାଯାଇ ନାହିଁ । ସେଥିପାଇଁ ସଠିକ ଭାବେ

କିଛି କୁହାଯାଇ ପାରିବ ନାହିଁ । ଏହା ନିଶ୍ଚିତ କଥା ଯେ ଏପରି ଆଂଶିକ ଭାବରେ ଇଥରୀୟ ଯମଳଙ୍କୁ ବାହାରକୁ ବାହାର କରି ଆଣିଲେ ଅନେକ ପ୍ରକାର ସ୍ନାୟବିକ ବିକାର ସୃଷ୍ଟି ହୋଇଥାଏ । କୌଣସି ଦୁର୍ଭାଗ୍ୟ ବଶତଃ ଏସବୁ କରିବାକୁ ପଡ଼ିଲେ କୌଣସି ବୁଦ୍ଧିମାନ ଲୋକ ଏହା କରିବେ ନାହିଁ ।

ଆମେ ପାର୍ଥିବ ଶରୀରର ସ୍ଥୂଳ ଓ ଇଥରୀୟ ଉଭୟ ବିଭାଗ ବିଷୟରେ ଆଲୋଚନା କଲେ । ଜୀବାତ୍ମା ଇହଲୋକରେ ତାର କାର୍ଯ୍ୟ ନିର୍ବାହ କରିବା ପାଇଁ ଏହାକୁ ଆବରଣ ଭାବରେ ଗ୍ରହଣ କରିବାକୁ ବାଧ । ଏହା ତାର କାର୍ଯ୍ୟ ନିର୍ବାହ କରିବା ପାଇଁ ଗୋଟିଏ ସୁଖକର କାର୍ଯ୍ୟାଳୟ ହୋଇପାରେ କିମ୍ବା ତାର ବନ୍ଦିଶାଳା ରୂପେ କାର୍ଯ୍ୟ କରିପାରେ । ଏଥିରୁ ମୁକ୍ତି ଲାଭ କରିବାର ଚାବିକାଠି କେବଳ ମୃତ୍ୟୁ ହାତରେ ।

ଆମେ ଦେଖିବା କଥା ଆମର ଶରୀର କିପରି ହେବା ଉଚିତ ଏବଂ ଶରୀରକୁ କିପରି ସେହି ଭାବରେ ଗଢ଼ି ପାରିବା । ଶରୀର ସମ୍ପୂର୍ଣ୍ଣ ସୁସ୍ଥ ଓ ସବଳ ହେବା ସଙ୍ଗେ ସଙ୍ଗେ କୋମଳ ଭାବଯୁକ୍ତ ସୁଗଠିତ, ମାର୍ଜିତ ଓ ସମ୍ବେଦନଶୀଳ ହେବା ଦରକାର । ଶରୀର ସ୍ୱାସ୍ଥ୍ୟବାନ ହେବା ନିହାତି ଦରକାର । ପ୍ରାଚ୍ୟ ଦେଶରେ ଶିଷ୍ୟରୂପେ ଗ୍ରହଣ କରିବା ପାଇଁ ସ୍ୱାସ୍ଥ୍ୟ ଗୋଟିଏ ଆବଶ୍ୟକ ଗୁଣ । କାରଣ ଶରୀରରେ କୌଣସି ଅସ୍ୱାସ୍ଥ୍ୟକର ପଦାର୍ଥ ରହିଲେ ଏହାକୁ ଜୀବାତ୍ମାର ଯନ୍ତ୍ର ହିସାବରେ ବ୍ୟବହାର ପାଇଁ ଅକ୍ଷମ କରି ଦେବ । ଭିତରୁ ବାହାରକୁ ପ୍ରେରିତ ସଂବେଗ (impulses) ଏବଂ ବାହାରୁ ଭିତରକୁ ପ୍ରେରିତ ସମ୍ବେଦନ (impression) ଉଭୟକୁ ବିକୃତ କରି ଦେବ । ଯନ୍ତ୍ରଗୁଡ଼ିକ ବ୍ୟାଧି ଗ୍ରସ୍ତ ହୋଇ କ୍ଲାନ୍ତ ଓ ବିକୃତ ହୋଇଗଲେ ଜୀବାତ୍ମାର ସାଧାରଣ କ୍ରିୟାରେ ବ୍ୟାଘାତ ଜନ୍ମେ । ସ୍ୱାସ୍ଥ୍ୟବାନ ଅଥଚ ମୃଦୁ ଗଠନ ଯୁକ୍ତ, ମାର୍ଜିତ, ସଂବେଦନଶୀଳ, ସ୍ୱତଃ କୁପ୍ରଭାବକୁ ଦୂର କରି ପାରୁଥିବା ଓ ସମସ୍ତ ସତ୍-ପ୍ରଭାବ ଆହରଣରେ ସ୍ୱତଃ କ୍ଷମ ହେଉଥିବା ଶରୀରଟିଏ ଆମକୁ ଯତ୍ନ ସହକାରେ ଗଠନ କରିବାକୁ ହେବ । ଆମେ ଜାଣନ୍ତାରେ ଏହି କାର୍ଯ୍ୟ ଧୀରେ ଧୀରେ ସାଧନ କରିବାକୁ ହେବ । ଆମ ଚାରି ପାଖରେ ମିଳୁଥିବା ବସ୍ତୁ ଭିତରୁ ଯେଉଁଗୁଡ଼ିକ ଏଥି ନିମନ୍ତେ ଅନୁକୂଳ ହେବ ସେହି ଗୁଡ଼ିକୁ ଗ୍ରହଣ କରି ଗଢ଼ିବାକୁ ପଡ଼ିବ । କିନ୍ତୁ ସେଥିପାଇଁ ଧୈର୍ଯ୍ୟ ସହକାରେ ଦୃଢ଼ତାର ସହିତ ଲକ୍ଷ୍ୟ ପ୍ରତି ଅବିଚଳିତ ଦୃଷ୍ଟି ରଖି କାମ କରିବାକୁ ପଡ଼ିବ । ଏଥିରେ ସାମାନ୍ୟ ପରିମାଣରେ କୃତକାର୍ଯ୍ୟ ହେବାକୁ ଆରମ୍ଭ କରିବା ମାତ୍ରେ ଆମେ ଜାଣି ପାରିବା ଆମ

ଭିତରେ ସବୁ ପ୍ରକାର ଇନ୍ଦ୍ରିୟ ଉପଲବ୍ଧି କରିବା ଶକ୍ତି ବଢ଼ି ଯାଇଛି, ଯାହା ପୂର୍ବରୁ କେବେ ଆମର ନ ଥିଲା । ଅନୁଭବ କରି ହେବ ଯେ ଶବ୍ଦ ଓ ଦୃଶ୍ୟ ପ୍ରତି ଆମେ ଅଧିକ ସମ୍ବେଦନଶୀଳ ହୋଇ ପଡ଼ିଛୁଁ । ପୂର୍ବତର କୋମଳତର ଓ ମଧୁରତର ସଙ୍ଗୀତ ତଥା କୋମଳତର ମଞ୍ଜୁଳତର ମାଧୁର୍ଯ୍ୟ ମଣ୍ଡିତ ଦୃଶ୍ୟ ଆମକୁ ଅଧିକ ଆକୃଷ୍ଟ କରୁଛି । ସାଧାରଣ ଲୋକଙ୍କ ଆଖିକୁ ଦେଖା ନ ଯାଉଥିବା ବର୍ଣ୍ଣର ମୃଦୁତା ଦର୍ଶନ କରିବା ପାଇଁ ଚିତ୍ରକର ଯେପରି ତାର ଆଖିକୁ ତାଲିମ କରେ, ସଙ୍ଗୀତଜ୍ଞ ଶୁଣିବାକୁ କାନକୁ ଅଭ୍ୟସ୍ତ କରାଏ, ସେହିପରି ଆମେ ସର୍ବସାଧାରଣ ଜୀବନରେ ଅଜ୍ଞାତ ରହି ଯାଉଥିବା ଜୀବନର କୋମଳତର ତରଙ୍ଗଗୁଡ଼ିକୁ ଗ୍ରହଣ କରିବାରେ ଆମ ଶରୀରକୁ ଅଭ୍ୟସ୍ତ କରାଇବା । ଏକଥା ସତ, ଅନେକ ଅପ୍ରିୟ ଅନୁଭୂତି ଆସିବ କାରଣ, ଏହି ସଂସାରରେ ବାସ କରୁଥିବା ଲୋକମାନେ ତାକୁ ଅନେକ ରୁକ୍ଷ ବନ୍ଧୁର କରି ଦେଇଛନ୍ତି । କିନ୍ତୁ ଅନ୍ୟ ଦିଗରେ ଅପୂର୍ବ ସୌନ୍ଦର୍ଯ୍ୟମାନ ସ୍ୱତଃ ପ୍ରକାଶିତ ହୋଇ ଆମର ବାଧା ବିଘ୍ନ ଅତିକ୍ରମ କରିବା କଷ୍ଟର ଶତଗୁଣେ ପୁରସ୍କାର ପ୍ରଦାନ କରିବ । ଏଭଳି ଶରୀର ଲାଭ କରିବା ପାଇଁ ଚେଷ୍ଟା କରିବା ଉଦ୍ଦେଶ୍ୟ ନୁହେଁ ଯେ ଏପରି ଶରୀରର ଅଧିକାରୀ ବୋଲି ଆମ୍ ବଡ଼ିମା ଦେଖାଇବା ବା ଶାରୀରିକ ସୁଖ ଭୋଗ କରିବା । ଏହାର ଉଦ୍ଦେଶ୍ୟ ହେଉଛି ଅଧିକ ବ୍ୟାପକ କ୍ଷେତ୍ରରେ କାର୍ଯ୍ୟ କରିବା ପାଇଁ ଶକ୍ତି ଅର୍ଜନ କରିବା ଓ ଶରୀରଗୁଡ଼ିକୁ ମନୁଷ୍ୟର ଅଗ୍ରଗତି ନିମନ୍ତେ କାର୍ଯ୍ୟ କରିବାପାଇଁ ଅଧିକ ଦକ୍ଷ ଉପକରଣ ରୂପେ ବ୍ୟବହାର କରିପାରିବା ଏବଂ ତଦ୍ୱାରା ନିଜକୁ ମନୁଷ୍ୟ ଜାତିର କ୍ରମବିକାଶରେ ସାହାଯ୍ୟରତ ମାହାତ୍ମାମାନଙ୍କ କାର୍ଯ୍ୟରେ ସାହାଯ୍ୟ କରିବା ସୌଭାଗ୍ୟ ଲାଭ କରିବାକୁ ଯୋଗ୍ୟକରି ଗଢ଼ିବା ।

ଯଦିଓ ଆମେମାନେ କେବଳ ପାର୍ଥିବ ସ୍ତରର ବିଷୟ ଆଲୋଚନାରେ ଏପର୍ଯ୍ୟନ୍ତ ରହି ଯାଇଛେ ତଥାପି ଏତିକି, କୁହାଯାଇପାରେ ଯେ, ଏହା କିଛି କମ ଗୁରୁତ୍ୱପୂର୍ଣ୍ଣ ନୁହେଁ । ଚେତନାର ଏହି ନିମ୍ନତମ ବାହନଟି ଟିକିଏ ଅଧିକ ଯତ୍ନ ଦରକାର କରେ ଓ ଯତ୍ନ କଲେ ଉପଯୁକ୍ତ ପ୍ରତିଦାନ ମଧ୍ୟ ଦିଏ । ଏହି ଜ୍ଞାନ ଯେତେବେଳେ ସର୍ବସାଧାରଣଙ୍କ ଆୟତ୍ତାଧୀନ ହେବ ଏବଂ ଏହାକୁ କେବଳ ଗୋଟିଏ ବିଚାରଯୋଗ୍ୟ ବିଷୟ ବୋଲି ନ ଭାବି ଲୋକମାନେ ଦୈନିକ ଜୀବନର ନିୟମ ରୂପେ ପାଳନ କରିବେ, ସେତେବେଳେ ଆମର ସହରଗୁଡ଼ିକ, ଆମର ଏହି ଦେଶ ନିର୍ମଳତର, ସୁନ୍ଦରତର ଓ ଉତ୍ତମତର ହୋଇ ଗଢ଼ି ଉଠିବ ।

# ଜ୍ୟୋତିର୍ମୟ ବା କାମନା ଶରୀର

ଆମେ ମନୁଷ୍ୟର ପାର୍ଥିବ ଶରୀରର ଦୃଶ୍ୟ ଓ ଅଦୃଶ୍ୟ ଉଭୟ ଭାଗ ବିଷୟରେ ଆଲୋଚନା କରି ବୁଝିପାରିଛନ୍ତି, ମନୁଷ୍ୟ ଏକ ଜୀବନ୍ତ ସଚେତନ ସତ୍ତା । ସେ ଚେତନାର ''ଜାଗ୍ରତ'' ଅବସ୍ଥାରେ ପାର୍ଥିବ ଜଗତରେ ବାସକରେ । ସେତେବେଳେ ପାର୍ଥିବ ଶରୀର ଜରିଆରେ ଯେତିକି ସମ୍ଭବ ସେତିକି ମାତ୍ର ଜ୍ଞାନ ପ୍ରକାଶ କରିପାରେ, ଶକ୍ତିର ଅଭିବ୍ୟକ୍ତି ସେତିକି ମାତ୍ର କରିପାରେ । ଏହି ପାର୍ଥିବ ଶରୀର ଗଠନର ଉତ୍କର୍ଷତା ଅନୁପାତରେ ପାର୍ଥିବଜଗତରେ ତାର ପୂର୍ଣ୍ଣତା ବା ଅପୂର୍ଣ୍ଣତା ନିର୍ଭର କରେ । ନିମ୍ନ ଜଗତରେ କାର୍ଯ୍ୟ କଲାବେଳେ ଏହି ଶରୀର ତାକୁ ସୀମିତ କରିଥାଏ ଓ ତା ଚାରି କଡ଼ରେ ଏକ ଅନତିକ୍ରମ୍ୟ ବେଷ୍ଟନୀ ଦ୍ୱାରା (ring passnot) ତାର ସୀମା ନିର୍ଦ୍ଦିଷ୍ଟ କରିଦିଏ । ଏହି ବେଷ୍ଟନୀ ବାହାରେ କିଛି ଜିନିଷ ତାଠାରୁ ଇହ ଜଗତରେ ପ୍ରକାଶିତ ହୋଇପାରେ ନାହିଁ । ସେଥିପାଇଁ ମନୁଷ୍ୟର ଅଗ୍ରଗତି ପକ୍ଷରେ ଏହା ଅତି ଗୁରୁତ୍ୱପୂର୍ଣ୍ଣ । ସେହିପରି ମନୁଷ୍ୟ ଯେତେବେଳେ ପାର୍ଥିବ ଶରୀର ତ୍ୟାଗକରି ବିଶ୍ୱର ଅନ୍ୟ ଭାଗରେ, କାମଲୋକ ବା ଜ୍ୟୋତିର୍ମୟମଣ୍ଡଳରେ ତାର କାମନା ଶରୀର ସାହାଯ୍ୟରେ କାମକରେ ସେତେବେଳେ ତାର କାମନା ଶରୀର ତାର ଜ୍ଞାନ ଓ ଶକ୍ତି ଅର୍ଥାତ ନିଜକୁ ଯେତିକି ଅଭିବ୍ୟକ୍ତ କରିବାକୁ ସକ୍ଷମ ହୁଏ ସେତିକି ମାତ୍ର ସେଠାରେ ପ୍ରକାଶ କରିପାରେ । ତେଣୁ ଏହି ଶରୀର ସବୁ ମଣିଷର ଏକାଧାରରେ ବାହନ ଓ ତାର ଶକ୍ତି ପ୍ରକାଶ କରିବାର ସୀମା । ମଣିଷ ତାର ଶରୀର ଅପେକ୍ଷା ଅନେକ ବଡ଼ ଓ ତାର ବହୁତ କିଛି ଅଛି ଯାହା ସେ

ପାର୍ଥିବ ବା କାମନା ଜଗତରେ ପ୍ରକାଶ କରିପାରେ ନାହିଁ । କିନ୍ତୁ ବିଶ୍ୱର ଯେଉଁ ଲୋକରେ ସେ ନିଜକୁ ଯେତିକି ଅଭିବ୍ୟକ୍ତ କରିପାରେ ତାକୁ ସେ ଲୋକରେ ସେତିକି ଦରର ମଣିଷ ହିସାବରେ ଗ୍ରହଣ କରନ୍ତି । ଇହ ଲୋକରେ ସେ ଯାହା ପ୍ରକାଶ କରିବାକୁ ଚାହୁଁଛି ତାହା କାମନା ଶରୀରଦ୍ୱାରା ସୀମିତ । ଆମେ ଉଚ୍ଚତର ଲୋକଗୁଡ଼ିକ ବିଷୟରେ ଆଲୋଚନା କଲାବେଳେ ଦେଖିବା ଯେ ମଣିଷ କ୍ରମବିକାଶ ପଥରେ ଯେତିକି ଅଗ୍ରସର ହେଉଛି, ନିଜକୁ ସେତିକି ଅଧିକ ପ୍ରକାଶ କରିପାରୁଛି ଏବଂ ଚେତନାର ଉଚ୍ଚତର ଯାନଗୁଡ଼ିକୁ କ୍ରମେ କ୍ରମେ ପୂର୍ଣ୍ଣତା ଦିଗରେ ନେଇ ଯାଉଛି ।

ଏଠାରେ ପାଠକମାନଙ୍କୁ ସ୍ମରଣ କରାଇ ଦେଲେ ଭଲ ହେବ ଯେ ଆମେମାନେ ଏପରି ଏକ ସ୍ତରରେ ପ୍ରବେଶ କରୁଛନ୍ତି, ଯେଉଁଠାରେ ବହୁତ ଲୋକ ପହଞ୍ଚିପାରନ୍ତି ନାହିଁ ଏବଂ ଯାହା ଅଧିକାଂଶ ଲୋକଙ୍କର ଅଜ୍ଞାତ । ସେ ବିଷୟରେ ଲାଭ କରିଥିବା ସମସ୍ତ ଜ୍ଞାନ ଯେ ଅଭ୍ରାନ୍ତ ବା ସେ ସବୁ ଦେଖିବାର ଯେ କିଛି ଭୁଲ ନାହିଁ ଏହା କେହି ଦାବୀ କରୁନାହିଁ । ଇହ ଲୋକରେ ଯେପରି ଦେଖିବାରେ ଭୁଲ ହୋଇପାରେ ବା ଏକ ଭୁଲ ସିଦ୍ଧାନ୍ତରେ ପହଞ୍ଚିବା ଅସମ୍ଭବ ନୁହେଁ, ଉଚ୍ଚତର ଲୋକଗୁଡ଼ିକ ବିଷୟରେ ଅଧ୍ୟୟନ କଲାବେଳେ ସେହିପରି ଭୁଲ ଘଟିପାରେ । ଏକଥା ସର୍ବଦା ମନେ ରଖିବା ଉଚିତ ଯେ ଯେତିକି ଜ୍ଞାନ ବୃଦ୍ଧି ଲାଭ କରୁଥିବ, ଯେତେ ଅଧିକ ଦିନ ଧରି ଶିକ୍ଷାଲାଭ ହେଉଥିବ ସେତିକି ଅଧିକରୁ ଅଧିକ ନିର୍ଭୁଲ ଜ୍ଞାନ ଲାଭ ହେଉଥିବ ଏବଂ ପୂର୍ବରୁ ଥିବା ଭ୍ରମଗୁଡ଼ିକ ଦୂରହୋଇ ଯାଉଥିବ । ଏ ପୁସ୍ତକର ଲେଖକ ଜଣେ ଶିକ୍ଷାର୍ଥୀମାତ୍ର । ତାଙ୍କର ଭୁଲ ହେବାର ସମ୍ଭାବନା ଅଛି । ଆଶା କରାଯାଉଛି ଭୁଲଗୁଡ଼ିକ ଭବିଷ୍ୟତରେ ଦୂରୀଭୂତ ହେବ । ତେବେ ଯେଉଁ ଭୁଲଘଟିବା ଆଶଙ୍କା କରାଯାଉଛି ତାହା କେବଳ ଘଟଣାଗୁଡ଼ିକର ପୁଙ୍ଖାନୁପୁଙ୍ଖ ବର୍ଣ୍ଣନରେ ଘଟିପାରେ । କିନ୍ତୁ ମୂଳତତ୍ତ୍ୱଗୁଡ଼ିକ ବିଷୟରେ ଭ୍ରମଘଟିବାର ଆଶଙ୍କା ନାହିଁ କିମ୍ବା ପ୍ରଧାନ ପ୍ରଧାନ ମୌଳିକ ସିଦ୍ଧାନ୍ତଗୁଡ଼ିକର ଏହା ବାଧକ ହେବନାହିଁ ।

ପ୍ରଥମେ କାମଲୋକ ବା ଜ୍ୟୋତିର୍ମୟ ମଣ୍ଡଳ କଥାଟି ପ୍ରାଞ୍ଜଳ ଭାବରେ ବୁଝିବା ଉଚିତ । କାମଲୋକ ସୃଷ୍ଟିର ଏକ ନିର୍ଦ୍ଦିଷ୍ଟ ଅଞ୍ଚଳ ଯାହା ପାର୍ଥିବ

ଜଗତକୁ ଘେରି ରହିବା ସଙ୍ଗେ ସଙ୍ଗେ ତାହା ସହିତ ଓତପ୍ରୋତ ଭାବରେ ଜଡ଼ିତ ହୋଇରହିଛି । ଏହା ଆମ ସାଧାରଣ ଆଖିକୁ ଦେଖା ନଯିବାର କାରଣ ହେଉଛି ଏହା ପାର୍ଥିବ ବସ୍ତୁଠାରୁ ଭିନ୍ନ ପ୍ରକୃତିର ବସ୍ତୁରେ ଗଠିତ । ଯଦି ପାର୍ଥିବ ଜଗତର ସୂକ୍ଷ୍ମତମ ପରମାଣୁ ବିଭାଜନ କରାଯାଏ ତାହା ପାର୍ଥିବ ଜଗତରୁ ଉଭେଇ ଯାଇ ବହୁତ ଗୁଡ଼ିଏ କାମଲୋକର ଘନତମ କଣିକାରେ ପରିଣତ ହୋଇଯିବ । ଏହା କାମଲୋକର କଠିନ ପଦାର୍ଥ ଅଟେ । ଆମେ ପାର୍ଥିବ ଜଗତରେ ସାତଗୋଟି ବିଭାଗ ବିଷୟରେ ଜାଣିଛୁଁ, ଯାହାର ଅଗଣିତ ପ୍ରକାରର ସଂଯୋଗ ହେତୁ ଏହି ପାର୍ଥିବ ଜଗତରେ ସମସ୍ତ ପଦାର୍ଥ ସୃଷ୍ଟି ହୋଇଛି । ଆମ ପାର୍ଥିବ ଜଗତ ସହିତ ଖାପ ଖାଇଲା ଭଳି ସାତଗୋଟି ବିଭିନ୍ନ ଉପବିଭାଗରେ କାମଲୋକର ପଦାର୍ଥମାନଙ୍କୁ ଦେଖିବାକୁ ମିଳେ । ସେହି ସାତ ଉପବିଭାଗ ଗୁଡ଼ିକରେ, ତହିଁରେ ଥିବା କଣିକାମାନଙ୍କର ଅଗଣିତ ପ୍ରକାରର ସଂଯୋଗ ଫଳରେ ସମସ୍ତ ପଦାର୍ଥ ସୃଷ୍ଟି ହୋଇଥାଏ । ପ୍ରତ୍ୟେକ ପାର୍ଥିବ ପରମାଣୁ କାମଲୋକୀୟ ପରମାଣୁ ଦ୍ୱାରା ବେଷ୍ଟିତ । ସେଥିପାଇଁ କାମଲୋକକୁ ଭୂଲୋକର ଆବରଣ ବା ଧାରଣକରୀ ବୋଲି କହି ଥାଆନ୍ତି । ବାସ୍ତବିକ ଭୂଲୋକ କାମଲୋକ ଭିତରେ ସ୍ଥାପିତ ରହିଛି । କାମଲୋକର ପଦାର୍ଥ ଜୀବର ବାହନ ରୂପେ କାର୍ଯ୍ୟକରେ । ଗୋଟିଏ ଜୀବାତ୍ମା ସମସ୍ତ ବାହନଗୁଡ଼ିକୁ ପ୍ରାଣବନ୍ତ କରିଛି । କାମ ପଦାର୍ଥ ସାହାଯ୍ୟରେ ଜୀବନ ସ୍ରୋତ ପାର୍ଥିବ ପଦାର୍ଥର ପ୍ରତ୍ୟେକ କଣାକୁ ଆବୃତ କରି ରଖିଛି, ଧାରଣ କରିଛି ଓ ପୋଷଣ କରୁଛି । ଏହି ଜୀବନ ପ୍ରବାହ କେବଳ ଯେ ଜୀବନୀ ଶକ୍ତି ପ୍ରଦାନ କରୁଛି ତାହା ନୁହେଁ, ସମସ୍ତ ପ୍ରକାର ବୈଦ୍ୟୁତିକ, ଚୁମ୍ବକୀୟ, ରାସାୟନିକ ଏବଂ ଅନ୍ୟଶକ୍ତିମାନଙ୍କର ଆକର୍ଷଣ, ସଂଯୋଜନ, ବିକର୍ଷଣ ଆଦି ବିଭାବ ମଧ୍ୟ ଏହା ପ୍ରକାଶିତ କରିଥାଏ । ସେହି ଯେଉଁ ଅଦ୍ୱିତୀୟ ଜୀବନ ସତ୍ତାର ଗର୍ଭରେ ଅଗଣିତ ବ୍ରହ୍ମାଣ୍ଡ ସମୁଦ୍ରରେ ମାଛ ପରି ଭାସୁଛନ୍ତି ଏସବୁ ତାହାରି ବ୍ୟଷ୍ଟିଗତ ରୂପମାତ୍ର । ଏହି ଯେଉଁ କାମଲୋକ ଭୂଲୋକ ସହିତ ଓତପ୍ରୋତ ଭାବରେ ଜଡିତ, ଜୀବାତ୍ମା ପ୍ରଥମେ ତାହାରି ଭିତରେ ଦେଇ ଭୂଲୋକର ଇଥରୀୟ ସ୍ତରରେ ପ୍ରବେଶ କରେ । ତତ୍ପରେ ଇଥରୀୟ ସ୍ତରଗୁଡ଼ିକ ଉକ୍ତ ଶକ୍ତିସମୂହର ବାହକ ହୋଇ ଭୂଲୋକର ଅନ୍ୟାନ୍ୟ ବିଭାଗମାନଙ୍କରେ

ସଞ୍ଚାରିତ କରିବା ପରେ ଯାଇଁ ଆମେ ତାର ଲୀଳା ଦେଖିପାରି ଥାଉଁ । ଆମେ ଯଦି କଳ୍ପନା କରୁଁ ଯେ ପାର୍ଥିବ ଜଗତ ଅନ୍ୟ କୌଣସି ପରିବର୍ତ୍ତନ ବିନା ଅସ୍ତିତ୍ୱହୀନ ହୋଇଗଲା, ତେବେ ମଧ୍ୟ ଆମେ ଏହାର ଅବିକଳ ପ୍ରକୃତିକୃତି କାମଲୋକରେ ଦେଖିବାକୁ ପାଇପାରିବା । ଆମେ ପୁଣି ଯଦି କଳ୍ପନା କରୁଁ ସମସ୍ତେ କାମଲୋକରେ କାର୍ଯ୍ୟକରିବା ଶକ୍ତି ଅର୍ଜନ କରିଛନ୍ତି, ତାହାହେଲେ ଆରମ୍ଭ ଅବସ୍ଥାରେ ସେ ସ୍ତ୍ରୀଲୋକ ହୁଅନ୍ତୁ ବା ପୁରୁଷ ହୁଅନ୍ତୁ ତାଙ୍କ ନିଜ ପରିବେଶରେ ଯେ କିଛି ପରିବର୍ତ୍ତନ ଘଟିଛି ତାହା ଜାଣି ପାରିବେ ନାହିଁ । ଯେଉଁ ଲୋକମାନେ ମୃତ୍ୟୁପରେ କାମଲୋକର ନିମ୍ନତର ସ୍ତରରେ ଚେତନା ଲାଭକରନ୍ତି, ସେମାନେ ନିଜକୁ ଏପରି ଅପରିବର୍ତ୍ତିତ ଅବସ୍ଥା ଭିତରେ ଦେଖନ୍ତି ଯେ ସେମାନେ ପାର୍ଥିବ ଜଗରେ ଜୀବିତ ଅଛନ୍ତି ବୋଲି ଭାବନ୍ତି । ଆମମାନଙ୍କ ଭିତରୁ ଅଧିକାଂଶ ଅତିନ୍ଦ୍ରୀୟ ଦୃଷ୍ଟି ଲାଭ କରି ନ ଥିବାରୁ କାମଲୋକର ଆପେକ୍ଷିକ ସତ୍ତାକୁ (Relative Reality) ଦୃଶ୍ୟମାନ ପ୍ରକଟିତ ବିଶ୍ୱର ଅଂଶ ରୂପେ ଭାବିନେବାକୁ ହେବ ଏବଂ ଅତୀନ୍ଦ୍ରିୟ ଦୃଷ୍ଟିରେ ଦେଖି ନ ପାରିଲେ ମଧ୍ୟ ମାନସିକ ଦୃଷ୍ଟିରେ ଦେଖିବାର ଚେଷ୍ଟା କରି ହେବ । ଏହା ପ୍ରକୃତ ସତ୍ୟର ଅଧିକ ନିକଟବର୍ତ୍ତୀ ହୋଇଥିବାରୁ ପାର୍ଥିବ ଜଗତ ଅପେକ୍ଷା ଅଧିକ ବାସ୍ତବ (real) । ଏହାର ଘଟଣାବଳୀ ପାର୍ଥିବ ସ୍ତରର ଘଟଣାପରି ପରୀକ୍ଷାଯୋଗ୍ୟ । ଇହଲୋକରେ ଜଣେ ଅନ୍ଧଲୋକ କିଛି ଦେଖିପାରେ ନାହିଁ, ପୁଣି କେତେକ ପଦାର୍ଥ କେବଳ ଅଣୁବୀକ୍ଷଣ ବା ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଦେଖି ହୁଏ । କାମଲୋକରେ ଠିକ ସେହିକଥା । ଯେଉଁ ମାନେ ଅତୀନ୍ଦ୍ରିୟ ଦୃଷ୍ଟି ଲାଭ କରି ନାହାନ୍ତି ସେମାନେ କାମ-ଲୋକର ବସ୍ତୁ ଦେଖି ପାରନ୍ତି ନାହିଁ ଏବଂ ଅନେକ ପଦାର୍ଥ ସାଧାରଣ ଅତୀନ୍ଦ୍ରିୟ ଦୃଷ୍ଟିରେ ମଧ୍ୟ ଦେଖାପଡ଼େ ନାହିଁ । କିନ୍ତୁ କ୍ରମବିକାଶର ବର୍ତ୍ତମାନ ଅବସ୍ଥାରେ ଇଚ୍ଛା କଲେ କାମନା ଶରୀରର ଇନ୍ଦ୍ରିୟଗୁଡ଼ିକୁ କାର୍ଯ୍ୟ କ୍ଷମ କରିହେବ । କେହି କେହି ଆଂଶିକ ଭାବରେ ଏହି ଶକ୍ତି ଲାଭ କରୁଅଛନ୍ତି ଏବଂ କାମଲୋକର ସୂକ୍ଷ୍ମତର ଅନୁଭବ କରିବାର ଶକ୍ତି ଅର୍ଜ୍ଜନ କରୁଛନ୍ତି । ଯେପରି ଇହଲୋକରେ ପିଲାମାନେ ତାଙ୍କର ଇନ୍ଦ୍ରିୟ ଗୁଡ଼ିକ ପ୍ରଥମେ ପ୍ରଥମେ ବ୍ୟବହାର କଲାବେଳେ ଭୁଲକରି ଥାଆନ୍ତି, କିନ୍ତୁ ପରେ ଅଭିଜ୍ଞତା ବଢ଼ିଲେ ତାହା ସଂଶୋଧିତ ହୋଇଯାଏ; ଠିକ ସେହିପରି

କାମଲୋକରେ ଜୀବମାନେ ଆରମ୍ଭ ଅବସ୍ଥାରେ ଅନେକ ଭୁଲ କରନ୍ତି କିନ୍ତୁ କେତେ କାଳପରେ ସେମାନେ ଇହଜଗତରେ ଯେପରି ଦେଖି ଶୁଣିପାରୁଥିଲେ କାମଲୋକରେ ସେହିପରି ସଠିକ ଭାବରେ ଦେଖି ଶୁଣି ପାରନ୍ତି । କିନ୍ତୁ ଏପରି ଶକ୍ତିକୁ କୃତ୍ରିମ ଉପାୟରେ ବଳପୂର୍ବକ ପ୍ରକାଶ କରାଇବା ଠିକ୍ ନୁହେଁ । କାରଣ, ଯେତେ ଦିନ ପର୍ଯ୍ୟନ୍ତ କେବଳ ପାର୍ଥିବ ଶକ୍ତି ଅର୍ଜନ କରାଯାଇଥାଏ ସେତେ ଦିନ ପର୍ଯ୍ୟନ୍ତ ପାର୍ଥିବ ଜଗତର ବସ୍ତୁମାନଙ୍କୁ ସୁବିଧାରେ ବ୍ୟବହାର କରିପାରୁଁ । କିନ୍ତୁ ତା ଭିତରକୁ ଅତୀନ୍ଦ୍ରିୟ ଦୃଷ୍ଟି, ଶବ୍ଦ ବା ଦୃଶ୍ୟ ବଳ ପୂର୍ବକ ଟାଣି ଆଣିଲେ ତାହା ବିଶୃଙ୍ଖଳା ସୃଷ୍ଟି କରିବା ସଙ୍ଗେ ସଙ୍ଗେ ସମୟ ସମୟରେ ବିପଜ୍ଜନକ ହୋଇଥାଏ । କିନ୍ତୁ ଏକଦା ଏପରି ଅବସ୍ଥା ସ୍ୱତଃ ଆସିବ । ଅଦୃଶ୍ୟ ଜଗତ ଅନ୍ତର୍ଭୁକ୍ତ ଉକ୍ତ କାମ-ଲୋକର ସତ୍ୟରେ ଜାଗ୍ରତ ଚେତନା ସ୍ୱତଃ ପରିପୂର୍ଣ୍ଣ ହୋଇଯିବ ।

ଏଥିପାଇଁ ଆମ ସମସ୍ତଙ୍କର କେବଳ ଗୋଟିଏ ଗୋଟିଏ କାମନା ଶରୀର ରହିଲେ ଯଥେଷ୍ଟ ହେବ ନାହିଁ । ଏହା ଆମ ସମସ୍ତଙ୍କର ଅଛି । କାମନା ଶରୀର ଉପଯୁକ୍ତ ରୂପେ ସୁଗଠିତ ଓ କାର୍ଯ୍ୟ କ୍ଷମ ହେବା ଦରକାର ଯେପରି ଚେତନା ତା ଭିତରେ କାର୍ଯ୍ୟ କରିପାରିବ । ଚେତନା ତା ଭିତର ଦେଇ କେବଳ ପାର୍ଥିବ ଶରୀର ଦ୍ୱାରା କାର୍ଯ୍ୟ ସାଧନ କରିବା ପରିବର୍ତ୍ତେ କେବଳ କାମନା ଶରୀରଦ୍ୱାରା କାର୍ଯ୍ୟ କରି ପାରିବ । ସମସ୍ତେ ସର୍ବଦା କାମନା ଶରୀର ଭିତର ଦେଇ ପାର୍ଥିବ ଶରୀରରେ କାର୍ଯ୍ୟ କରନ୍ତି । କିନ୍ତୁ ଖୁବ୍ କମ ଲୋକ ପାର୍ଥିବ ଶରୀରରୁ ଅଲଗା ହୋଇ କେବଳ କାମନା ଶରୀର ଦ୍ୱାରା କାମ କରି ପାରନ୍ତି । ଇହ ଜଗତର ସାଧାରଣ କାର୍ଯ୍ୟଗୁଡ଼ିକ କାମନା ଶରୀର ଜରିଆରେ ସଂସାଧିତ ନ ହେଲେ ମଣିଷର ମନ ସହିତ ବାହାର ଜଗତର କିଛି ସମ୍ପର୍କ ରହିବ ନାହିଁ, ଅର୍ଥାତ୍ ପାର୍ଥିବ ଶରୀରର ଇନ୍ଦ୍ରିୟମାନଙ୍କ ଉପରେ ପଡୁଥିବା ବହିର୍ଜଗତର ସଂଘାତ (impact) ଏବଂ ମନରେ ସେମାନଙ୍କ ବିଷୟରେ ସୃଷ୍ଟି ହେଉଥିବା ଅନୁଭୂତି ଗୁଡ଼ିକ ଭିତରେ କିଛି ସମ୍ପର୍କ ରହିବ ନାହିଁ । ବାହାର ଜଗତର ସଂଘାତ କାମନା ଶରୀରରେ ପ୍ରଥମେ ସମ୍ବେଦନାରେ ପରିଣତ ହୁଏ । ତା' ପରେ ଏହା ମନଦ୍ୱାରା ଅନୁଭୂତି ରୂପେ ଗୃହୀତ ହୁଏ । ଏହି କାମନା ଶରୀର ଯାହା ଉପରେ କି ସମ୍ବେଦନା (sensation) କେନ୍ଦ୍ର ସବୁ ଅଛି ତାକୁ କାମଲୋକୀୟ ମଣିଷ

ବୋଲି କୁହାଯାଇପାରେ ଯେପରି ପାର୍ଥିବ ଶରୀର ସମ୍ପର୍କରୁ ଆମେ ପାର୍ଥିବ ମଣିଷ କହିଥାଉଁ । ଏହା ବାସ୍ତବରେ ଏକ ବାହନ ମାତ୍ର । ବେଦାନ୍ତରେ ଏହାକୁ 'କୋଷ' ବା 'ଆବରଣ' ବୋଲି କୁହାଯାଇଛି । ଯାହା ଭିତରେ ମଣିଷ ନିଜେ କାମ କରୁଛି ଏବଂ ଯାହା ଭିତର ଦେଇ ସ୍ଥୂଳତର ପାର୍ଥିବ ଶରୀର ସହିତ ଯୋଗାଯୋଗ ରକ୍ଷା କରୁଛି ।

କାମନା ଶରୀରର ଉପାଦାନକୁ କାମଲୋକର ପଦାର୍ଥପରି ତାର ସୂକ୍ଷ୍ମତା ଅନୁଯାୟୀ ସାତଗୋଟି ସ୍ତରରେ ବିଭକ୍ତ କରାଯାଇଥାଏ । କାମନା ଶରୀର ଏହି ସବୁ ସ୍ତରରୁ ନିଜର ସୂକ୍ଷ୍ମତା ବା ସ୍ଥୂଳତା ଅନୁରୂପ ପଦାର୍ଥ ଗ୍ରହଣ କରିପାରେ । ସୁଗଠିତ କାମନା ଶରୀର ବିଶିଷ୍ଟ ଜଣେ ମଣିଷକୁ କଳ୍ପନା କରିବା ବଡ଼ ସହଜ । ତୁମେ ତା ବିଷୟରେ ଏତିକି ଭାବିଲେ ଯଥେଷ୍ଟ ଯେ ସେ ତାଙ୍କର ପାର୍ଥିବ ଶରୀରଟି ଛାଡ଼ି ଦେଇ ସୂକ୍ଷ୍ମ ଦେହରେ ଠିଆ ହୋଇଛନ୍ତି । ସାଧାରଣ ଦୃଷ୍ଟିରେ ଦେଖା ନ ଗଲେ ସୁଦ୍ଧା ଅତୀନ୍ଦ୍ରିୟ ଦୃଷ୍ଟିରେ ସେ ଦେଖା ଯିବେ । ଏହି କାମନା ଶରୀର ଦେଖିବାକୁ ସ୍ଥୂଳ ଶରୀରର ଏକ ଆଲୋକମୟ ପ୍ରତିକୃତି ଭଳି । 'ସୁଗଠିତ କାମନା ଶରୀର' କହିବାର ତାତ୍ପର୍ଯ୍ୟ ହେଉଛି, ଅନୁନ୍ନତ ମଣିଷର କାମନା ଶରୀର ସୁଗଠିତ ହୋଇ ନଥାଏ । ଏହା ଅପରିଣତ ଅବସ୍ଥାରେ ଥାଏ । ଏହାର ସୀମା ରେଖା ଅନିର୍ଦ୍ଦିଷ୍ଟ ଓ ଉପାଦାନଗୁଡ଼ିକ ଅନୁଜ୍ଜ୍ୱଳ ଓ ଅବିନ୍ୟସ୍ତ ଅବସ୍ଥାରେ ଥାଏ । ଏହାକୁ ସ୍ଥୂଳ ଶରୀରରୁ ବାହାର କରି ନେଲେ, ଏହା ଭାସମାନ ମେଘଖଣ୍ଡ ପରି ଆକାରହୀନ ଦେଖାଯାଇଥାଏ । ତାହାର ଅବସ୍ଥା ଦେଖିଲେ ହିଁ ଜଣାପଡ଼େ ଏହା ସ୍ୱତନ୍ତ୍ର ବାହନ ରୂପେ କାର୍ଯ୍ୟ କରିବାକୁ ଅଯୋଗ୍ୟ । ପ୍ରକୃତରେ କହିଲେ ଏହା ଶରୀର ଭାବେ ଆଦୌ ଗଠିତ ହୋଇନଥାଏ ଏବଂ କାମଲୋକୀୟ ବସ୍ତୁଖଣ୍ଡପରି ପ୍ରତୀୟମାନ ହୁଏ । ସୁଗଠିତ କାମନା ଶରୀର ଜଣାଇ ଦିଏ ଯେ ତାର ଅଧିକାରୀ ପୃଥିବୀରେ ବୁଦ୍ଧି ବୃତ୍ତିରେ ବା ଆଧ୍ୟାତ୍ମିକ ଦିଗରେ କିଛିଟା ଅଗ୍ରଗତି କରିଛି । ସୁତରାଂ କାମନା ଶରୀରର ଆକୃତି ପ୍ରକୃତିରୁ ତା ଅଧିକାରୀର ଉନ୍ନତିର ସ୍ତର ଜଣାପଡ଼ିଯାଏ । ସୀମା ରେଖାର ସ୍ପଷ୍ଟତା, ଏତନ୍ନିହିତ ଉପାଦାନର ଉଜ୍ଜ୍ୱଳତା ଓ ବିନ୍ୟାସର ଉତ୍କର୍ଷତା ଦେଖି ସେ ଶରୀରକୁ ବ୍ୟବହାର କରୁଥିବା ଜୀବାତ୍ମା କ୍ରମ ବିକାଶର କେଉଁ ସ୍ତରରେ ପହଞ୍ଚି ପାରିଛି ତାହା ଜାଣିହୁଏ ।

କାମନା ଶରୀରର ଉନ୍ନତି ସାଧନ କରିବା ପ୍ରଶ୍ନଟି ଆମ ସମସ୍ତଙ୍କ ନିକଟରେ ଅତି ଗୁରୁତ୍ୱପୂର୍ଣ୍ଣ । ଏହାକୁ ଉନ୍ନତ କରିବାକୁ ହେଲେ ମନେ ରଖିବାକୁ ହେବ ଯେ ଏକ ଦିଗରେ ଏହା ଯେପରି ସ୍ଥୂଳ ଶରୀର ବିଶୋଧନ ଉପରେ ନିର୍ଭର କରେ, ଅନ୍ୟ ଦିଗରେ ସେହିପରି ମନର ପବିତ୍ରତା ଓ ସମ୍ପ୍ରସାରଣ ଉପରେ ନିର୍ଭର କରେ । କାମନା ଶରୀର ଭାବନାଦ୍ୱାରା ସହଜରେ ପ୍ରଭାବିତହୁଏ । କାରଣ କାମଲୋକର ପଦାର୍ଥ ପାର୍ଥିବ ଅପେକ୍ଷା ମାନସ ଲୋକର ତରଙ୍ଗ ପ୍ରତି ଅଧିକ ପ୍ରତିବେଦନଶୀଳ (responsive) । ଉଦାହରଣ ସ୍ୱରୂପ ଆମେ କାମଲୋକକୁ ଲକ୍ଷ୍ୟ କଲେ ସେଥିରେ ଅନବରତ ପରିବର୍ତ୍ତନଶୀଳ ଆକୃତି ସବୁ ଦେଖିବାକୁ ପାଇବା । ସେଠାରେ 'ସଂକଳ୍ପରୂପ' (thought form) ସବୁ ଦେଖିବା ଯାହାକି ସେହି ଲୋକର ମୂଳ ଭୌତିକ ସତ୍ତାଦ୍ୱାରା (elemental essence) ଗଠିତ ଓ ଭାବନା ଦ୍ୱାରା ସଂଜୀବିତ । ଆହୁରି ଦେଖିବାକୁ ପାଇବା ମୂଳ ଭୌତିକ ସତ୍ତାର ବିଶାଳ ଖଣ୍ଡମାନ ଯହିଁରୁ ବିଭିନ୍ନ ଆକାରର ଖଣ୍ଡମାନ ବାହାରକୁ ବାହାରୁଛନ୍ତି, ପୁଣି ତାହାରି ଭିତରେ ଅଦୃଶ୍ୟ ହୋଇ ଯାଉଛନ୍ତି । ସାବଧାନତାର ସହିତ ଲକ୍ଷ୍ୟ କଲେ ଦେଖି ପାରିବା ଭାବନାର ସ୍ରୋତ ଏହି କାମ ପଦାର୍ଥମାନଙ୍କୁ ଶିହରିତ କରୁଛି । ବଳିଷ୍ଠ ଭାବନାଗୁଡ଼ିକ ଏହି କାମ ପଦାର୍ଥର ଆବରଣ ଭିତରେ ବହୁକାଳ ପର୍ଯ୍ୟନ୍ତ ତାଙ୍କର ସ୍ୱତନ୍ତ୍ର ଅସ୍ତିତ୍ୱ ରକ୍ଷା କରିଥାନ୍ତି । ଦୁର୍ବଳ ଭାବନାଗୁଡ଼ିକ କ୍ଷୀଣ ଭାବରେ ଏହାକୁ ଆଶ୍ରୟ କରନ୍ତି ଏବଂ କିଛି ସମୟ ପରେ ଦ୍ୱିଧାଗ୍ରସ୍ତ ହୋଇ ପରିତ୍ୟାଗ କରନ୍ତି । ଏହିପରି ଭାବରେ କାମ ଜଗତରେ ଯେଉଁସବୁ ପରିବର୍ତ୍ତନ ଘଟିଥାଏ ତାହା ସର୍ବଦା ଭାବନା ସଂବେଗରେ ଘଟିଥାଏ । ମଣିଷର କାମନା ଶରୀର କାମ ପଦାର୍ଥରେ ଗଠିତ ହୋଇଥିବାରୁ ଭାବନାର ପ୍ରଭାବ ଅତି ସହଜରେ ଏଥିରେ ପ୍ରତିକ୍ରିୟା ସୃଷ୍ଟି କରିପାରେ । କୌଣସି ଭାବନା ନିଜ ମନ ଭିତରୁ ଆସୁ ବା ବାହାରେ ଅନ୍ୟ କାହା ମନରୁ ଆସୁ, ଭାବନାର ପ୍ରତ୍ୟେକଟି ଆଘାତ ଏଥିରେ ଗୁଣାନୁରୂପ ଶିହରଣ ସୃଷ୍ଟି କରେ ।

ଏହିପରି ଭିତରୁ ଓ ବାହାରୁ ପ୍ରଭାବିତ ହେଉଥିବା କାମନା ଶରୀରକୁ ଅଧ୍ୟୟନ କଲେ ଆମେ ଦେଖିବାକୁ ପାଇବା ଯେ ଏହା ସ୍ଥୂଳ ଶରୀରରେ ଅନୁପ୍ରବେଶ କରି ( ଓତପ୍ରୋତ ଜଡ଼ିତ କରି ), ତା ବାହାରେ ଚାରି କଡ଼ରେ

ରଙ୍ଗୀନ ବଉଦ ପରି ଘେରି ରହିଥାଏ । ମନୁଷ୍ୟର ଇନ୍ଦ୍ରିୟ ଜନିତ ପ୍ରବୃତ୍ତି ଅନୁଯାୟୀ ଏହାର ରଙ୍ଗ ଭିନ୍ନ ଭିନ୍ନ ହୋଇଥାଏ । ସ୍ଥୂଳ ଶରୀର ବାହାରେ ଥିବା ଅଂଶକୁ "କାମ ପ୍ରଭା" (Kamic aura) କୁହାଯାଏ । ଏହା ମଣିଷର କାମନା ବାସନାରେ ଗଠିତ ତାର କାମନା ଶରୀରର ଅଂଶ । ଏହି କାମନା ଶରୀର ମଣିଷର ସମସ୍ତ କାମ-ଚେତନାର ବାହନ, ତାର ସମସ୍ତ ପାଶବିକ ତୃଷ୍ଣା ଓ କାମନା ବାସନାର ବାସସ୍ଥଳୀ ଏବଂ ଇନ୍ଦ୍ରିୟାନୁଭୂତିର କେନ୍ଦ୍ର, ଅର୍ଥାତ୍ ଏହିଠାରେ ସଂବେଦନା (sensation) ଜାଗ୍ରତ ହୁଏ । ଏହା ଭାବନା ପ୍ରଭାବରେ ସ୍ପନ୍ଦିତ ହୋଇ ଅନବରତ ରଙ୍ଗ ପରିବର୍ତ୍ତନ କରୁଥାଏ । କେହି ଜଣେ କ୍ରୋଧାନ୍ୱିତ ହେଲେ କାମନା ଶରୀରରେ ଗାଢ଼ ଲାଲ (scarlet) ରଙ୍ଗର ଝଲକ ଆସେ, ପ୍ରେମ ଭାବନା ପ୍ରଭାବରେ ଏଥିରେ ଗୋଲାପି ଲାଲ ରଙ୍ଗର ସ୍ପନ୍ଦନ ଖେଳିଯାଏ । ଯଦି ମଣିଷର ଭାବନା ଉନ୍ନତ ଓ ମହାନ ହୁଏ ତାହାକୁ ଫୁଟାଇବା ପାଇଁ ସୂକ୍ଷ୍ମତର କାମପଦାର୍ଥ ଦରକାର ହୁଏ ଏବଂ ସେଥିପାଇଁ କାମନା ଶରୀର ସେହି ଜଗତର ପ୍ରତ୍ୟେକ ବିଭାଗରୁ ସ୍ଥୂଳତର କଣିକାଗୁଡ଼ିକ ବର୍ଜନ କରି ଦୁର୍ଲ୍ଲଭ ସୂକ୍ଷ୍ମତର କଣିକା ଅର୍ଜନ କରିଥାଏ । ଯେଉଁ ବ୍ୟକ୍ତିର ଚିନ୍ତାଧାରା ଅନୁନ୍ନତ ଓ ପଶୁ ସୁଲଭ ଭାବପୂର୍ଣ୍ଣ ତାର କାମନା ଶରୀର ନିକୃଷ୍ଟ ଧରଣର ମୋଟା, ବହଳିଆ ଓ ଗାଢ଼ ବା କଳା ରଙ୍ଗର ହୋଇଥାଏ । ଅନେକ ସମୟରେ ଏହାର ଘନତା ଏତେ ବେଶି ହୋଇଥାଏ ଯେ ସ୍ଥୂଳ ଶରୀରର ସୀମା ଏହା ଭିତରେ ପ୍ରାୟ ହଜିଯାଏ । କିନ୍ତୁ ଜଣେ ଉନ୍ନତ ଲୋକର କାମନା ଶରୀର ପତଳା, ସ୍ୱଚ୍ଛ ଓ ତେଜୋମୟ ଓ ଉଜ୍ଜ୍ୱଳ ବର୍ଣ୍ଣ ଯୁକ୍ତ ହୋଇଥାଏ । ଏହା ପ୍ରକୃତରେ ସୁନ୍ଦର ବସ୍ତୁଟିଏ । ଏପରି କ୍ଷେତ୍ରରେ ନିମ୍ନ ସ୍ତରର କାମନାଗୁଡ଼ିକ ଦମିତ ହୋଇଯାଇଥାଏ ଓ ମନର ବିବେଚନା ବଳରେ କାମ ପଦାର୍ଥ ମାର୍ଜିତ ହୋଇ ଯାଇଥାଏ । ଉଦ୍ଦେଶ୍ୟ ଥାଇ ହେଉ ବା ଉଦ୍ଦେଶ୍ୟ ନ ଥାଉ ସଦ୍‌ଚିନ୍ତାଦ୍ୱାରା କାମନା ଶରୀର ମାର୍ଜିତ ହୋଇଥାଏ । ଏହା ମନେ ରଖିବା ଦରକାର ଯେ ଏହି ଭିତରର କାର୍ଯ୍ୟ ବାହାରୁ ଆକର୍ଷିତ ହୋଇ ଆସୁଥିବା ଭାବନା ଉପରେ ଅତି ଶକ୍ତିଶାଳୀ ପ୍ରଭାବ ପକାଇଥାଏ । ଯେଉଁ ବ୍ୟକ୍ତିର ଶରୀର ସର୍ବଦା କୁଭାବନା ଗ୍ରହଣ କରିବାରେ ଅଭ୍ୟସ୍ତ ତାହା ଆଖପାଖର ଅନୁରୂପ "ସଂକଳ୍ପ ରୂପ" ଗୁଡ଼ିକୁ ଚୁମ୍ବକ ପରି ଆକର୍ଷଣ କରେ । ଗୋଟିଏ ଶୁଦ୍ଧ କାମନା ଶରୀର

ଏସବୁ ଭାବନା ପ୍ରତି ବିରାଗ ଭାବ ପ୍ରକାଶ କରେ ଏବଂ ନିଜର ସମଧର୍ମୀ ଭାବନାମାନଙ୍କୁ କେବଳ ଆକର୍ଷଣ କରେ ।

ପୂର୍ବରୁ କୁହା ହୋଇଛି, କାମ ଶରୀର ପାର୍ଥିବ ଶରୀର ଉପରେ ନିର୍ଭର କରେ ଏବଂ ତାହାର ପବିତ୍ରତା ବା ଅପବିତ୍ରତା ଦ୍ୱାରା ପ୍ରଭାବିତ ହୁଏ । କଠିନ ତରଳ, ବାଷ୍ପ ଓ ଇଥର ଯେଉଁ ସବୁ ପଦାର୍ଥଦ୍ୱାରା ଶରୀର ଗଠିତ ସେସବୁ ନିକୃଷ୍ଟ ବା ମାର୍ଜିତ, ମୋଟା କିମ୍ବା ସରୁ ହୋଇପାରେ । ସେମାନଙ୍କର ଏହିପରି ପ୍ରକୃତି ପୁଣି କାମପଦାର୍ଥ ଉପରେ ପ୍ରଭାବ ପକାଇଥାଏ । ସେମାନଙ୍କର ଏହିପରି ପ୍ରକୃତି ପୁଣି କାମ ପଦାର୍ଥ ଉପରେ ପ୍ରଭାବ ପକାଇଥାଏ । ଯଦି ଆମେ ନିର୍ବୋଧତା ହେତୁ ସ୍ଥୂଳ ଶରୀର ପ୍ରତି ଯତ୍ନହୀନ ହୋଇ ତାକୁ ନିକୃଷ୍ଟ ଅମାର୍ଜିତ କଠିନ କଣିକାରେ ଗଢ଼ିବା ତାହା କାମନା ଶରୀର ପାଇଁ ଅନୁରୂପ ନିକୃଷ୍ଟ କଣିକାମାନ ଆକର୍ଷଣ କରିବ ଯାହାକୁ କାମ- ଲୋକର କଠିନ ପଦାର୍ଥ କୁହାଯାଇପାରେ । ଅନ୍ୟ ଦିଗରେ ଆମେ ସ୍ଥୂଳ ଶରୀରକୁ ଯେତିକି ମାର୍ଜିତ କଠିନ ପଦାର୍ଥରେ ଗଢ଼ିବା କାମଲୋକର ଅନୁରୂପ ମାର୍ଜିତ କଣିକା ଆମର କାମନା ଶରୀର ଦ୍ୱାରା ଆକୃଷ୍ଟ ହେବ । ଆମ ଖାଦ୍ୟରୁ ଅପବିତ୍ର ବସ୍ତୁ ଯଥା - ପ୍ରାଣୀର ରକ୍ତ, ସୁରା ଏବଂ ଅନ୍ୟାନ୍ୟ ଦୂଷଣୀୟ ଓ ଅବନତି କାରକ ପଦାର୍ଥ ବର୍ଜିତ କରି ବିଶୁଦ୍ଧ ଖାଦ୍ୟ ପେୟ ଦେଇ ଆମେ ଯେ କେବଳ ଚେତନାର ପାର୍ଥିବ ଶରୀରକୁ ଉନ୍ନତ କରିଥାଉଁ ସେତିକି ନୁହେଁ, ତଦ୍ୱାରା କାମଲୋକରୁ ଅଧିକ କମନୀୟ ଓ ସୂକ୍ଷ୍ମ ପଦାର୍ଥ ସଂଗ୍ରହ କରି ଚେତନାର କାମନା ଶରୀରକୁ ମଧ ପବିତ୍ର କରୁଁ । ଏହାକୁ ସୁଗଠିତ କରିବାର ପ୍ରଭାବ କେବଳ ଯେ ଇହ ଜଗତର ଏହି ଜନ୍ମଟି ପାଇଁ ପ୍ରୟୋଜନ ତାହା ନୁହେଁ, ଆମେ ପରେ ଜାଣି ପାରିବା, ମୃତ୍ୟୁ ପରେ କାମଲୋକରେ ରହିବା କାଳରେ ଅତୀତ ବିଶ୍ଳେଷଣ କରିବା ଅବସ୍ଥାରେ ଏବଂ ଆସନ୍ତା ଜନ୍ମରେ ଇହ ଜଗତରେ କି ପ୍ରକାର ଶରୀର ଧାରଣ କରିବା ତାହା ସହିତ ଏହାର ନିବିଡ଼ ସମ୍ପର୍କ ରହିଛି ।

କଥାଟି ମାତ୍ର ଏତିକି ନୁହେଁ, ନିକୃଷ୍ଟ ଖାଦ୍ୟ କଦର୍ଯ୍ୟ ପ୍ରକୃତିର କାମଲୋକ ପ୍ରାଣୀମାନଙ୍କୁ କାମଲୋକରୁ ଆକୃଷ୍ଟ କରି ଆଣେ । ଆମେ କାମଲୋକ ବସ୍ତୁ ସମ୍ପର୍କରେ ବିଚାର କରିବା ସଙ୍ଗେ ସଙ୍ଗେ ସେହି ଲୋକର

ମୌଳିକ ସତ୍ତା (elementals) ମାନଙ୍କ ବିଷୟରେ ମଧ୍ୟ ବିଚାର କରିବା । ସେଠାରେ ଉଚ୍ଚ ଓ ନିମ୍ନ ସ୍ତରର ମୌଳିକ ସତ୍ତା ମନୁଷ୍ୟର ଭାବନାରୁ ଜାତ ହୋଇ ରହିଛନ୍ତି । ସେଠାରେ କାମନା ଶରୀରରେ ଆବଦ୍ଧ ହୋଇ ନୀତିଭ୍ରଷ୍ଟ ଲୋକମାନେ ମଧ୍ୟ ଅଛନ୍ତି । ଏମାନଙ୍କୁ ପ୍ରାଥମିକ ସତ୍ତା (elementaries) କୁହାଯାଇପାରେ । ଏମାନଙ୍କର ଶରୀର ଏମାନଙ୍କ ସମଧର୍ମୀ ପଦାର୍ଥରେ ଗଠିତ । ଏହି ମୌଳିକ ସତ୍ତାଗୁଡ଼ିକ ନିକୃଷ୍ଟ ଖାଦ୍ୟ ପ୍ରତି ଆକୃଷ୍ଟ ହୁଅନ୍ତି ଏବଂ ଏହି ପ୍ରାଥମିକ ସତ୍ତାମାନେ ତାଙ୍କ ପାର୍ଥିବ ଶରୀରରେ ଥିବା ସମୟରେ ଯେଉଁ ପ୍ରକାର କୁକର୍ମ କରିବାକୁ ଚାହୁଁ ଥିଲେ, ସେହିପରି କୁକର୍ମ ଲିପ୍ତ ବ୍ୟକ୍ତିଙ୍କ ପ୍ରତି ବିଶେଷ ଭାବରେ ଆକୃଷ୍ଟ ହୋଇଥାଆନ୍ତି । କୌଣସି ଅତୀନ୍ଦ୍ରିୟ ଦୃଷ୍ଟି ସମ୍ପନ୍ନ ଲୋକ ଲଣ୍ଡନ ରାସ୍ତାରେ ଗଲା ବେଳେ ଦେଖିବାକୁ ପାଇବ ଯେ ଦଳକୁ ଦଳ ବିଭତ୍ସ ଜୀବନ୍ତ ମୌଳିକ ସତ୍ତା କଂସେଇ ଦୋକାନ ଚାରିପଟରେ ଭିଡ଼ କରିଛନ୍ତି । ବିଅର ଦୋକାନରେ, ଜିନ ଆଦି ପାନୀୟ ପିଇବା ସ୍ଥାନରେ ନିମ୍ନ ସ୍ତରର ପ୍ରାଥମିକ ସତ୍ତା ଗୁଡ଼ିକ ଠୁଳ ହୋଇ ମଦ୍ୟରୁ ବାହାରୁ ଥିବା ଅପବିତ୍ର ବିଚ୍ଛୁରଣ ଉପଭୋଗ କରୁଛନ୍ତି ଏବଂ ସୁଯୋଗ ପାଇବା ମାତ୍ରେ ମଦ୍ୟପାୟୀମାନଙ୍କ ଶରୀରରେ ପ୍ରବେଶ କରି ଯାଉଛନ୍ତି । ଏହି ପ୍ରକାର ଅପବିତ୍ର ପଦାର୍ଥରେ ଗଠିତ ଏବଂ ଏହିପରି ପାରିପାର୍ଶ୍ୱିକ ଅବସ୍ଥା ଭିତରେ ଲାଳିତ କାମନା ଶରୀରଧାରୀ ବ୍ୟକ୍ତିମାନଙ୍କ ପ୍ରତି ପ୍ରାଥମିକ ସତ୍ତାଗୁଡ଼ିକ ଆକୃଷ୍ଟ ହୁଅନ୍ତି । ଏହା କାମଲୋକର ପ୍ରତ୍ୟେକ ବିଭାଗ ପ୍ରତି ପ୍ରଯୁଜ୍ୟ । ଆମେ ପାର୍ଥିବ ଶରୀର ବିଶୋଧନ କରିବା ଦ୍ୱାରା ତାର ତୁଲ୍ୟ କାମଲୋକ ସ୍ତରର ପଦାର୍ଥ ଆକର୍ଷଣରେ ମଧ୍ୟ ଶୁଦ୍ଧତା ଆସେ ।

କାମନା ଶରୀରର ଭବିଷ୍ୟତ ଅବସ୍ଥା ଆମେ ବ୍ୟବହାର କରୁଥିବା ପଦାର୍ଥ ଉପରେ ନିର୍ଭର କରେ । ବିଶୋଧନ ପ୍ରକ୍ରିୟା ଦ୍ୱାରା ଆମେ ଏହି ଶରୀରକୁ ଯେତେ ସୂକ୍ଷ୍ମରୁ ସୂକ୍ଷ୍ମତର କରି ଗଢ଼ିବା ସେ ସେତେ ନିମ୍ନତର ସଂବେଗରେ ସ୍ପନ୍ଦିତ ନ ହୋଇ କାମଲୋକର ଉଚ୍ଚତର ପ୍ରଭାବ ପ୍ରତି ଆଗ୍ରହୀ ହେବ । ଶରୀର ଯନ୍ତ୍ର ସାଧାରଣତଃ ବାହାରୁ ଆସୁଥିବା ସମସ୍ତ ପ୍ରକାରର ସ୍ପନ୍ଦନ ଗ୍ରହଣ କରିପାରେ । କିନ୍ତୁ ଆମେ ତାକୁ କ୍ରମେ କ୍ରମେ ଏପରି ଭାବରେ ଗଢ଼ିବା

ଯେ ତାହା କ୍ରମେ କ୍ରମେ ନିମ୍ନ ସ୍ତରର ସ୍ପନ୍ଦନ ଗ୍ରହଣ କରିବା ଶକ୍ତି ହରାଇ କେବଳ ଉଚ୍ଚତର ସ୍ପନ୍ଦନ ଗ୍ରହଣ କରିବା ଶକ୍ତି ଅର୍ଜନ କରିବ । ପରିଶେଷରେ ଏହା ଗୋଟିଏ ଉଚ୍ଚତର ସ୍ୱର ପ୍ରକାଶ ନିମନ୍ତେ ବନ୍ଧା ହୋଇଥିବା ବିଶେଷ ଯନ୍ତ୍ରରେ ପରିଣତ ହୋଇଯିବ । ଯେପରି ଖଣ୍ଡିଏ ଖଣ୍ଡିଏ ତାରକୁ ତାହାର ମୋଟା, ଲମ୍ବା ଓ ଦୃଢ଼ତା ଆଦି ବିଚାର କରି ବାଦ୍ୟ ଯନ୍ତ୍ରରେ ଖଞ୍ଜି ଦେଲେ ତାହା ଉପଯୁକ୍ତ ସ୍ପନ୍ଦନ ସୃଷ୍ଟି କରିଥାଏ ସେହିପରି ଆମେ ଆମର କାମନା ଶରୀରକୁ ଚାରିପାଖରେ ଅନବରତ ବାଜୁଥିବା ମହନୀୟ ଐକତାନ (harmony) ସହିତ ତାଳ ମିଳାଇ ସ୍ପନ୍ଦନ ସୃଷ୍ଟି କରିବା ପାଇଁ ଉପଯୁକ୍ତ କରି ଗଢ଼ି ପାରିବା । ଏହା କେବଳ ଅନୁମାନ ବା ମତବାଦର କଥା ନୁହେଁ । ଏହା ଏକ ବୈଜ୍ଞାନିକ ସତ୍ୟ । ଇହ ଜଗତରେ ଯେଉଁ ସ୍ୱରରେ ତାରକୁ ବାନ୍ଧିବା କାମନା ଶରୀରରେ ତାର ସେହି ସ୍ୱରରେ ଆପେ ବାନ୍ଧି ହୋଇଯିବ । ଏଠାରେ ଯେପରି କାମଲୋକରେ ସେହିପରି କାର୍ଯ୍ୟକାରଣ ସମ୍ପର୍କ ନିୟମ ବଳବତ୍ତର ଅଛି । ଆମେ ଏହି ନିୟମକୁ ଅନୁସରଣ କରୁଛୁଁ, ଏହି ନିୟମର ଆଶ୍ରୟ ନେଉଛୁଁ, ତା ଉପରେ ନିର୍ଭର କରୁଛୁଁ । ଆମର ଦରକାର ହେଉଛି ଜ୍ଞାନ ଏବଂ ସେହି ଜ୍ଞାନକୁ କାର୍ଯ୍ୟରେ ପରିଣତ କରିବା ପାଇଁ ଇଚ୍ଛା । ପ୍ରଥମେ ଏହି ଜ୍ଞାନକୁ ଏକ ପ୍ରତିପାଦ୍ୟ ବିଷୟ ବୋଲି ଗ୍ରହଣ କରି ସଂସାରର ନିମ୍ନତର ସ୍ତରରେ ତୁମକୁ ଜଣାଥିବା ଘଟଣା ସହିତ ଏହାର ସଠିକତା ବିଚାର ଦ୍ୱାରା ପରୀକ୍ଷା କରାଯାଇପାରେ । ପରେ ଯେତେବେଳେ କାମନା ଶରୀର ଶୋଧିତ ହୋଇଯିବ ସେତେବେଳ ଏହି ପ୍ରତିପାଦ୍ୟ ବିଷୟ ପ୍ରମାଣିତ ହୋଇ ଅଭିଜ୍ଞତାରେ ପରିଣତ ହେବ ଏବଂ ତୁମେ ଆରମ୍ଭରେ ଯେଉଁଗୁଡ଼ିକୁ ପ୍ରତିପାଦ୍ୟ ରୂପେ ଗ୍ରହଣ କରିଥିଲ ତାହାର ସତ୍ୟତା ନିରୂପିତ ହୋଇଯିବ ।

ସୁତରାଂ କାମଲୋକ ଉପରେ ପ୍ରଭୁତ୍ୱ ବିସ୍ତାର କରିବା ଏବଂ ସେଠାରେ କାର୍ଯ୍ୟ କରିବାର ଯୋଗ୍ୟତା ଅର୍ଜନ କରିବା ସର୍ବାଦୌ ଏହି ବିଶୋଧନ ପ୍ରକ୍ରିୟା ଉପରେ ନିର୍ଭର କରେ । କେତେକ ନିର୍ଦ୍ଦିଷ୍ଟ ଯୋଗ ପ୍ରକ୍ରିୟା ଅଛି ଯଦ୍ୱାରା କାମନା ଶରୀରର ଇନ୍ଦ୍ରିୟମାନଙ୍କୁ ଯୁକ୍ତି ଯୁକ୍ତ ସୁଷ୍ଠୁ ରୀତିରେ ଉନ୍ନତି ପଥରେ ଅଗ୍ରସର କରାଇ ହୁଏ, କିନ୍ତୁ ଯେଉଁ ଲୋକମାନେ ଏହି ସହଜ ପ୍ରାରମ୍ଭିକ ବିଶୋଧନ କ୍ରିୟା ଗ୍ରହଣ କରି ନାହାନ୍ତି ତାଙ୍କୁ ସେ ସବୁ ଶିକ୍ଷା ଦେବା ବୃଥା । ଏହା ସାଧାରଣ

ଅଭିଜ୍ଞତାର ବିଷୟ, ଲୋକମାନେ ନୂତନ ଓ ଅସାଧାରଣ ମାର୍ଗରେ ଉନ୍ନତି କରିବାକୁ ବ୍ୟଗ୍ର । କିନ୍ତୁ ଯେଉଁମାନେ ଦୈନନ୍ଦିନ ଜୀବନରେ ପ୍ରାରମ୍ଭିକ ପ୍ରସ୍ତୁତି ସୋପାନ ଅଭ୍ୟାସ କରୁ ନାହାନ୍ତି ସେମାନଙ୍କୁ ଯୋଗ ଶିକ୍ଷା ଦେବା ନିଷ୍ଫଳ । ମନେକର ଜଣେ ପ୍ରସ୍ତୁତ ନୋହିଥିବା ସାଧାରଣ ଲୋକକୁ ଯୋଗର ଏକ ସହଜ ସୂତ୍ର ଶିଖାଇ ଦିଆଗଲା । ସେ ତାହାକୁ ନୂଆ ଓ ପୂର୍ବରୁ ଅଜଣା ବୋଲି, ଶୀଘ୍ର ଫଳ ଲାଭ କରିବା ଆଶା କରି ଆଗ୍ରହ ଓ ଉତ୍ସାହ ସହିତ ଆରମ୍ଭ କରି ଦେଲା । କିନ୍ତୁ ସାଧନା କାର୍ଯ୍ୟ କରିବାର ବର୍ଷଟିଏ ପୂରି ଥିବ କି ନାହିଁ, ଦୈନନ୍ଦିନ ନିୟମ ପାଳନର ନିରବଚ୍ଛିନ୍ନ କଷ୍ଟ ତଥା ଶୀଘ୍ର ଫଳ ଲାଭ ନ ହେବା ଜନିତ ହତାଶା ଓ ଅଧ୍ୟବସାୟ ସହିତ ଦିନ ପରେ ଦିନ କାର୍ଯ୍ୟ କରିବା ଅଭ୍ୟାସର ଅଭାବ, ତାର ଧୈର୍ଯ୍ୟ ଭାଙ୍ଗି ଦେବ ଏବଂ ସେ ଯୋଗାଭ୍ୟାସ ଛାଡ଼ି ଦେବ । ନୂତନତାର ମୋହ ଭାଙ୍ଗି ଯିବା ପରେ ପରେ ଅବସାଦ ଘୋଟି ଯିବ । ଯେଉଁ ଲୋକ ଖାଦ୍ୟ ପେୟରେ ଥିବା ଅସତ୍ ବନ୍ଧନକୁ ସାମୟିକ ଲଙ୍ଘନ ବଳରେ ଛିନ୍ନ କରି ପାର୍ଥିବ ଓ କାମନା ଶରୀର ଶୋଧନ ପରି ଅପେକ୍ଷାକୃତ ସହଜ କର୍ତ୍ତବ୍ୟ ସମ୍ପାଦନ କରି ପାରିବ ନାହିଁ ବା କରିବ ନାହିଁ, ତା ପକ୍ଷରେ ନୂତନତ୍ୱର ମୋହରେ କଠିନତର ଯୋଗ ପ୍ରକ୍ରିୟା ପଛରେ ଧାଇଁବା ଅର୍ଥହୀନ । କାରଣ ଅଳ୍ପ ଦିନ ପରେ ଏହା ଏକ ଅସହ୍ୟ ଭାର ପରି ବୋଧ ହୁଏ ଓ ସେ ତାହାକୁ ତ୍ୟାଗ କରି ଦିଏ । କିନ୍ତୁ ଏହି ସହଜ ସରଳ ଉପାୟଗୁଡ଼ିକ କିଛି ଦିନ ଅଭ୍ୟାସ ନ କଲେ ଯେତେ ଯେତେ ବିଶିଷ୍ଟ ଯୌଗିକ ପନ୍ଥା କଥା ଲୋକମାନେ କହନ୍ତି ସେସବୁ ମଧ୍ୟ ତା ପାଇଁ ଅର୍ଥହୀନ । କିନ୍ତୁ ଉକ୍ତ ଶରୀର ଶୋଧନ କିଛି ଦିନ କଲା ପରେ ନୂତନ ସମ୍ଭାବନା ସବୁ ଆପଣା ଛାଏଁ ଦେଖାଯିବ । ସେ ଦେଖିବ କ୍ରମେ କ୍ରମେ ତା ଭିତରେ ଜ୍ଞାନର ଉନ୍ମେଷ ହେଉଛି । ତୀକ୍ଷ୍ଣତର ଦୃଷ୍ଟି ଜାଗ୍ରତ ହେଉଛି । ଚାରି ଦିଗରୁ ସ୍ପନ୍ଦନ ତା ପାଖକୁ ଆସି ତା ଭିତରେ ସେଗୁଡ଼ିକ ପ୍ରତିବେଦନା (response) ଜାଗ୍ରତ କରାଉ ଅଛନ୍ତି ଯାହା କି ପୂର୍ବରୁ ଦୃଷ୍ଟିହୀନ ସ୍ଥୂଳ ଅବସ୍ଥାରେ ସମ୍ଭବ ନ ଥିଲା । ଅତୀତ କର୍ମ ଅନୁସାରେ ଶୀଘ୍ର ହେଉ ବା ବିଳମ୍ବରେ ହେଉ ତା ନିଜର ଏହି ଅଭିଜ୍ଞତା ଲାଭ ହେବ ଯେପରି ଶିଶୁଟିଏ ଅକ୍ଷର ଶିଖିବାର କଷ୍ଟ ପାରି ହେଲେ ବହି ପଢ଼ିବାର ଆନନ୍ଦ ପାଏ । ତାର ଯତ୍ନହୀନ ଦିନଗୁଡ଼ିକରେ ଯାହା ସେ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲା ସେହି ସବୁ

ସମ୍ଭାବନା ତାର ଜ୍ଞାନ ଓ ଆୟତ୍ତ ଭିତରେ ଆସେ । ଜ୍ଞାନର ନୂତନ ରାଜ୍ୟ ତା ସମ୍ମୁଖରେ ପ୍ରସାରିତ ହୋଇଯାଏ ଏବଂ ଚାରି ଦିଗରେ ବୃହତ୍ତର ରାଜ୍ୟ ଉନ୍ମିଳିତ ହୋଇଯାଏ ।

ଆମେ ଯଦି କିଛି ସମୟ ପାଇଁ ଆମର ସୁପ୍ତ ଓ ଜାଗ୍ରତ ଅବସ୍ଥାରେ କାମନା ଶରୀରର କାର୍ଯ୍ୟ ସମ୍ପର୍କରେ ଅନୁଧ୍ୟାନ କରିବା ତାହା ହେଲେ ସ୍ଥୂଳ ଶରୀରରୁ ଅଲଗା ହୋଇ ଯାଇ ଚେତନାର ବାହନରୂପେ ଏହା କିପରି କାର୍ଯ୍ୟ କରେ ତାହା ସହଜରେ ଓ ଶୀଘ୍ର ବୁଝି ପାରିବା । ଜଣେ ଲୋକକୁ ତାର ଜାଗ୍ରତ ଅବସ୍ଥାରେ ଓ ଶୋଇବା ଅବସ୍ଥାରେ ଲକ୍ଷ୍ୟ କଲେ କାମନା ଶରୀର ବିଷୟରେ କେତେକ ଉଲ୍ଲେଖ ଯୋଗ୍ୟ ଘଟଣା ଦେଖିବାକୁ ମିଳେ । ସେ ଯେତେବେଳେ ଜାଗ୍ରତ ଥାଏ, ସେତେବେଳେ କାମନା ଶରୀରର ବର୍ଣ୍ଣ ପରିବର୍ତ୍ତନ ଇତ୍ୟାଦି ପ୍ରକ୍ରିୟା ପାର୍ଥିବ ଶରୀର ଭିତରେ ଓ ତାକୁ ଲାଗି ଠିକ୍ ତାର ଚାରି ପଟରେ ଆପେ ଆପେ ଘଟିଥାଏ । କିନ୍ତୁ ନିଦରେ ଶୋଇଥିଲା ବେଳେ ଦେଖାଯାଏ ଯେ ସ୍ଥୂଳ ଶରୀର ଓ ଇଥରୀୟ ଯମଜ ବିଛଣାରେ ଶୋଇ ଥାଆନ୍ତି ଏବଂ କାମନା ଶରୀର ତାଙ୍କ ଉପରେ ଆକାଶରେ ଭାସୁଥାଏ । ଆମେ ଲକ୍ଷ୍ୟ କରୁଥିବା ବ୍ୟକ୍ତିଟି ଯଦି ମଧ୍ୟମ ବର୍ଗର ହୋଇଥାଏ, ତାର କାମନା ଶରୀର ଭୌତିକ ଶରୀରରୁ ଅଲଗା ହୋଇଗଲେ ଆକୃତି ହୀନ ମେଞ୍ଚାଟିଏ ପରି ଦେଖାଯାଏ । ଏହା ପାର୍ଥିବ ଶରୀରକୁ ଛାଡ଼ି ବେଶୀ ଦୂରକୁ ଯାଇପାରେ ନାହିଁ ଓ ଚେତନାର ବାହାନ ରୂପେ କୌଣସି କାର୍ଯ୍ୟରେ ଆସେ ନାହିଁ । ଏହା ଭିତରେ ଥିବା ମନୁଷ୍ୟ ଅତି ଅସ୍ପଷ୍ଟ ଚିତ୍ତ ଓ ସ୍ୱପ୍ନାବିଷ୍ଟ ଅବସ୍ଥାରେ ଥାଏ । ଭୌତିକ ଶରୀରରୁ ଅଲଗା ହୋଇ କୌଣସି କାର୍ଯ୍ୟ କରିବାର ଅଭ୍ୟାସ ତାର ନଥାଏ । ବସ୍ତୁତଃ ଯେଉଁ ବାହନ ଜରିଆରେ କାମ କରିବାରେ ସେ ଅଭ୍ୟସ୍ତ, ତା ଅଭାବରୁ ଆପାତତଃ ନିଦ୍ରିତ ଅବସ୍ଥାରେ ଥାଏ ବୋଲି କୁହାଯାଇପାରେ । ସେ କାମଲୋକର ସ୍ପନ୍ଦନ ଗ୍ରହଣ କରିବାକୁ ଅକ୍ଷମ ଏବଂ ତାର ଅପରିପୁଷ୍ଟ ଶରୀର ଦ୍ୱାରା ନିଜକୁ ସେଠାରେ ପ୍ରକାଶ କରିବାକୁ ଅସମର୍ଥ । ଏହା ଭିତରେ ଥିବା ଅନୁଭୂତି କେନ୍ଦ୍ରଗୁଡ଼ିକ (Centres of sensation) ଭାସମାନ ସଂକଳ୍ପ ରୂପଦ୍ୱାରା ପ୍ରଭାବିତ ହୋଇଥାଏ । ଯେଉଁ ବିଷୟଗୁଡ଼ିକ ନିମ୍ନ ପ୍ରକୃତିକୁ ଜାଗ୍ରତ କରାଏ ସେଗୁଡ଼ିକ ପ୍ରତି ସେ ଆଗ୍ରହ ପ୍ରକାଶ କରେ । ଏହାକୁ ନିରୀକ୍ଷଣ କଲେ

ଏତିକି ଦେଖିବାକୁ ମିଳିବ ଯେ ଏହି ତନ୍ଦ୍ରା ବିଜଡ଼ିତ ଓ ଅସ୍ପଷ୍ଟ ଶରୀର କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟ ପାଇଁ ଅନୁପଯୁକ୍ତ ଓ ଅପରିଣତ ଅବସ୍ଥାରେ ଅଳସ ଭାବରେ ପାର୍ଥିବ ଶରୀର ଉପରେ ଭାସି ବୁଲୁଛି । ଯଦି ତାକୁ ତାର ପାର୍ଥିବ ସଙ୍ଗୀ ପାଖରୁ ଦୂର କରି ବିଚ୍ଛିନ୍ନ କରି ଦେବାର କୌଣସି ସମ୍ଭାବନା ଘଟେ ତାହାହେଲେ ପାର୍ଥିବ ଶରୀର ଜାଗ୍ରତ ହୋଇଯାଏ ଏବଂ ସେ ତତ୍କ୍ଷଣାତ୍ ତହିଁରେ ପ୍ରବେଶ କରିଯାଏ ।

ଯେଉଁ ଲୋକ କ୍ରମ ବିକାଶ ପଥରେ ବିଶେଷ ଅଗ୍ରଗତି କରିଛନ୍ତି, ମନେ କର ଯେଉଁ ଲୋକ କାମଲୋକରେ କାର୍ଯ୍ୟ କରିବାରେ ଅଭ୍ୟସ୍ତ ଏବଂ ସେଥିପାଇଁ କାମନା ଶରୀର ବ୍ୟବହାର କରି ପାରୁଛନ୍ତି, ତାଙ୍କର ପାର୍ଥିବ ଶରୀର ନିଦ୍ରାଭିଭୂତ ଥିବା ସମୟରେ ତାଙ୍କର କାମନା ଶରୀର ତା ଭିତରୁ ବାହାରି ଯାଇ ସମ୍ପୂର୍ଣ୍ଣ ସଚେତନ ଅବସ୍ଥାରେ ସମ୍ମୁଖ ଭାଗରେ ଉପସ୍ଥିତ ଥିବା ଦେଖାଯାଏ । ଏପରି କାମନା ଶରୀରର ସୀମା ସୁସ୍ପଷ୍ଟ, ଶରୀର ସୁନିର୍ଦ୍ଦିଷ୍ଟ ଭାବରେ ମଣିଷର ଆକୃତି ସଦୃଶ ସୁଗଠିତ ଏବଂ ସେହି ଲୋକର ବାହନ ଭାବରେ ବ୍ୟବହୃତ ହେବାକୁ ସକ୍ଷମ । ଏପରି ବାହନଟିକୁ ବ୍ୟବହାର କରିବା ପାର୍ଥିବ ଶରୀର ଅପେକ୍ଷା ଅନେକ ସୁବିଧା ଜନକ । ସେ ଉତ୍ତମ ରୂପେ ଜାଗ୍ରତ ଓ ପାର୍ଥିବ ଶରୀରରେ ଆବଦ୍ଧ ଥିବା ବେଳ ଅପେକ୍ଷା ଅଧିକ ତତ୍ପରତା ସହିତ, ଅଧିକ ନିର୍ଭୁଲ ଭାବରେ, ଅଧିକ ହୃଦୟଙ୍ଗମ କରିବା ଶକ୍ତି ବଳରେ କାର୍ଯ୍ୟ ନିର୍ବାହ କରିବାକୁ ସକ୍ଷମ । ବିଛଣାରେ ଶୋଇଥିବା ଶରୀରରେ କିଛି ଅସୁବିଧା ନ ଘଟାଇ ଏହା ଅସାମାନ୍ୟ ଦ୍ରୁତ ଗତିରେ ଯେ କୌଣସି ଦୂର ସ୍ଥାନକୁ ଅବାଧରେ ଯାତାୟାତ କରିପାରେ ।

ଯଦି ଲୋକଟି ତାର ପାର୍ଥିବ ଶରୀର ଓ କାମନା ଶରୀର ମଧ୍ୟରେ ସଂଯୋଗ ରକ୍ଷା କରିବା ଜାଣି ନଥାଏ ଏବଂ ସେ ଶୋଇ ପଡ଼ିବା ପରେ କାମନା ଶରୀର ବାହାରକୁ ବାହାରି ଯାଇଥିବା ସମୟରେ ଯଦି ଚେତନା ନିରବଚ୍ଛିନ୍ନ ନ ରହେ, ତାହେଲେ ସେ କାମଲୋକରେ ସମ୍ପୂର୍ଣ୍ଣ ଜାଗ୍ରତ ଓ ସଚେତନ ଥିଲେ ମଧ୍ୟ ଏହି ଅନୁପସ୍ଥିତି କାଳରେ ଲାଭ କରି ଥିବା ଜ୍ଞାନଦ୍ୱାରା ତାର ସ୍ଥୂଳ ମସ୍ତିଷ୍କକୁ ପ୍ରଭାବିତ କରିପାରେ ନାହିଁ । ତା ଫଳରେ ଜାଗ୍ରତ ଚେତନା ବୋଲାଉଥିବା

ସୀମିତ ଭାଗଟି ତାର କାମଲୌକିକ ଅଭିଜ୍ଞତା ଅଂଶ ଗ୍ରହଣ କରିପାରେ ନାହିଁ । ତାର ପାର୍ଥିବ ଶରୀର ଅତି ଘନ ହୋଇଥିବାରୁ କାମନା ଶରୀର ପାଖରୁ ଅଭିଜ୍ଞତା ଗୁଡ଼ିକ ଗ୍ରହଣ କରିପାରେ ନାହିଁ । ବେଳେ ବେଳେ ପାର୍ଥିବ ଶରୀର ଯେତେବେଳେ ନିଦରୁ ଉଠି କ'ଣ ଗୋଟିଏ ବିଷୟ ଅନୁଭବ କରିଥିଲା ପରି ମନେ କରେ, କିନ୍ତୁ ତାହାର କିଛି ହେଲେ ମନେ ପଡ଼େ ନାହିଁ । ତଥାପି ଏହି ଅନୁଭୂତି ଜଣାଇ ଦିଏ ଯେ ପାର୍ଥିବ ଶରୀରଠାରୁ ଦୂରରେ କାମ ଲୋକରେ ଚେତନା କିଛି ଗୋଟିଏ କାମ କରୁଥିଲା ଯଦିଓ ମସ୍ତିଷ୍କର ଗ୍ରହଣ କରିବା ଶକ୍ତିର ସ୍ୱଳ୍ପତା ହେତୁ ଘଟଣାଟିକୁ ସଠିକ ସ୍ମରଣ କରି ପାରୁନାହିଁ । ଅନ୍ୟ କେତେକ ସମୟରେ କାମନା ଶରୀର ପାର୍ଥିବ ଶରୀରକୁ ଫେରିବା ବେଳେ ଇଥରୀୟ ଯମଜ ଓ ସ୍ଥୂଳ ଶରୀରରେ ଧାରଣା ଜନ୍ମାଇବାକୁ ସକ୍ଷମ ହୁଏ ଏବଂ ସ୍ଥୂଳ ଶରୀର ନିଦରୁ ଉଠିବା ବେଳକୁ କାମଲୋକର ଅଭିଜ୍ଞତା ସୁସ୍ପଷ୍ଟ ଭାବରେ ତାର ସ୍ମରଣ ଥାଏ । କିନ୍ତୁ ଏହି ସ୍ମୃତି ଅତି ଶୀଘ୍ର ଉଭେଇ ଯାଏ । ଯେତେ ଚେଷ୍ଟା କଲେ ମଧ୍ୟ ଆଉ ମନେ ପଡ଼େ ନାହିଁ । ବରଂ ମନେ ପକାଇବା ପାଇଁ ପ୍ରତ୍ୟେକ ଥର ଚେଷ୍ଟା କଲାବେଳେ ପାର୍ଥିବ ମସ୍ତିଷ୍କରେ ସୃଷ୍ଟି ହେଉଥିବା ଅଧିକରୁ ଅଧିକ ସ୍ପନ୍ଦନ କାମ-ଲୋକରୁ ସୂକ୍ଷ୍ମତର ସ୍ପନ୍ଦନକୁ ବୁଡାଇ ପକାଇ ସେ ସ୍ମୃତିର ପୁନରାବୃତ୍ତିକୁ ସମ୍ପୂର୍ଣ୍ଣ ଅସମ୍ଭବ କରି ପକାଏ ।

ଆହୁରି ମଧ୍ୟ କେତେକ ସମୟରେ ମଣିଷ ସ୍ଥୂଳ ମସ୍ତିଷ୍କରେ ନୂତନ ଜ୍ଞାନର ସଞ୍ଚାର କରିଥାଏ, କିନ୍ତୁ ଜାଣିପାରେ ନାହିଁ ତାହା କେଉଁଠାରୁ ଆସିଲା । ଏସବୁ କ୍ଷେତ୍ରରେ ମନେହୁଏ ଧାରଣାଗୁଡ଼ିକ ଆପଣା ଛାଏଁ ଜାଗ୍ରତ ଚେତନାରେ ଉଦିତ ହୋଇଛନ୍ତି । ପୂର୍ବରୁ ଦୁର୍ବୋଧ ସମସ୍ୟାର ସମାଧାନ ସ୍ୱତଃ ହୋଇଯାଏ, ଅଜଣା ବିଷୟରେ ଆଲୋକ-ପାତ ହୁଏ, ଏସବୁ ଆପେ ଆପେ ହୋଇଗଲା ବୋଲି ମନେହୁଏ । ଯେତେବେଳେ ଏହିପରି ସବୁ ଘଟେ ଏହା କ୍ରମ ବିକାଶ ପଥରେ ଅଗ୍ରଗତି ବୋଲି ବୁଝିବାକୁ ହେବ, କାରଣ ଏଥିରୁ ଜଣାପଡେ ତାର କାମନା ଶରୀର ସୁଗଠିତ ଓ ସେ କାମଲୋକରେ ତତ୍ପରତା ସହିତ କାର୍ଯ୍ୟ କରି ପାରୁଛି ଯଦିଓ ତାର ପାର୍ଥିବ ଶରୀର ସେସବୁ ଗ୍ରହଣ କରିବାକୁ ସମ୍ପୂର୍ଣ୍ଣ କ୍ଷମ ନୁହେଁ । ବେଳେ ବେଳେ ପାର୍ଥିବ ଶରୀର ସେସବୁ ଗ୍ରହଣ କରିବାରେ ସକ୍ଷମ ହୋଇଥାଏ ଏବଂ ଏହାକୁ ଆମେ ବିଶଦ, ଯୁକ୍ତିଯୁକ୍ତ ଓ

ସାମଞ୍ଜସ୍ୟ ପୂର୍ଣ୍ଣ ସ୍ୱପ୍ନ କହୁଁ । ଏପ୍ରକାର ସ୍ୱପ୍ନ ଚିନ୍ତାଶୀଳ ଲୋକମାନେ ଅନେକ ସମୟରେ ଦେଖନ୍ତି । ସେତେବେଳେ ସେମାନେ ସ୍ୱପ୍ନ ଅବସ୍ଥାରେ ଜାଗ୍ରତ ସଂସାର ଅପେକ୍ଷା କିଛି କମ କ୍ରିୟାଶୀଳ ନଥାନ୍ତି, ଏପରିକି ସେମାନେ କେତେକ ସମୟରେ ସ୍ୱପ୍ନରେ ଯେଉଁ ଜ୍ଞାନ ଲାଭ କରନ୍ତି ତାହା ଇହ ଜଗତରେ କାର୍ଯ୍ୟରେ ଲାଗିଥାଏ । ଏଗୁଡ଼ିକ କ୍ରମ ବିକାଶର ବିଭିନ୍ନ ପର୍ଯ୍ୟାୟ ଏବଂ କାମନା ଶରୀର ଗଠନ ଓ ପାର୍ଥିବ ଶରୀର ଅବସ୍ଥାରେ ଉନ୍ନତି ଘଟୁଥିବାର ନିଦର୍ଶନ ।

ଅନ୍ୟ ଦିଗରେ, ଯେଉଁମାନେ ଆଧାତ୍ମିକ କ୍ରିୟାରେ ପ୍ରକୃତ ଓ ଦ୍ରୁତ ଉନ୍ନତି କରୁଛନ୍ତି ସେମାନେ ତାଙ୍କ ମସ୍ତିଷ୍କକୁ ତିଳେ ମାତ୍ର ପ୍ରଭାବିତ ନ କରି କାମଲୋକରେ ଫଳପ୍ରଦ କାର୍ଯ୍ୟମାନ କରି ଥାଆନ୍ତି । ପାର୍ଥିବ ଚେତନାକୁ ଫେରିବା ପରେ କାମଲୋକରେ କରିଥିବା କାର୍ଯ୍ୟର କିଛି ହେଲେ ସ୍ମରଣ ରହେ ନାହିଁ, ଯଦିଓ ସେମାନେ ଲକ୍ଷ୍ୟ କରିପାରନ୍ତି ଯେ ତାଙ୍କର ପାର୍ଥିବ ଚେତନା ଚିର ବର୍ଦ୍ଧିଷ୍ଣୁ ଆଲୋକରେ ଆଲୋକିତ ହେଉଛି ଓ ବ୍ୟାପକତର ଆଧାତ୍ମିକ ସତ୍ୟ ବିଷୟରେ ଜ୍ଞାନ ଲାଭ କରୁଛି । ଏହା ଗୋଟିଏ ଉତ୍ସାହ ପ୍ରଦ ଘଟଣା ଯାହାକୁ ସବୁ ଛାତ୍ରମାନେ ଖିଆଲ ରଖିବେ । ଏହି କଥା ଉପରେ ମଧ୍ୟ ସେମାନେ ବିଶ୍ୱାସ ରଖି ପାରନ୍ତି । ତାହା ହେଲେ ସ୍ଥୂଳ ଶରୀରର ମସ୍ତିଷ୍କ ଅତି ଭୌତିକ ଅଭିଜ୍ଞତା ଗ୍ରହଣ କରିବାକୁ ଯେତେ ଦୁର୍ବଳ ହେଉ ପଛକେ, ଆମେ ପରପାଇଁ ଯେତିକି କାମ କରିବାକୁ ଶିଖିବା, ଆମେ ଜଗତର ଉପକାରରେ ଯେତେବେଶୀ ଲାଗିବାକୁ ଚେଷ୍ଟା କରିବା, ଆମେ ମଣିଷ ଜାତିର ବରିଷ୍ଠ ଜୀବନ୍ମୁକ୍ତ ମହାତ୍ମାମାନଙ୍କ ପ୍ରତି ଶ୍ରଦ୍ଧାରେ ଯେତିକି ଦୃଢ଼ ଓ ଅଟଳ ରହିବା ଓ ସେମାନଙ୍କ ମହାନ୍ କାର୍ଯ୍ୟରେ ଆମର ଯତ୍‌ସାମାନ୍ୟ ଅଂଶଟି ସାଗ୍ରହରେ ଓ ନିଖୁଣ ଭାବରେ ତୁଲାଇବା ନିମନ୍ତେ ଯେତିକି ଯତ୍ନ କରି ପାରିବା, ଆମେ ସେତିକି ନିର୍ବାଧରେ କାମନା ଶରୀରକୁ ଏବଂ ତା ଭିତରେ ଆମର କାର୍ଯ୍ୟ କରିବା ଶକ୍ତିକୁ ବଢ଼ାଇ ଚାଲିବା ଏବଂ ତଦ୍ୱାରା ନିଜକୁ ଅଧିକ ଦକ୍ଷ ସେବକ କରି ଗଢ଼ି ପାରିବା । କାମନା ଶରୀର କାର୍ଯ୍ୟ କ୍ଷମ ହେଲେ ଆମେ ଗାଢ଼ ନିଦ୍ରାରେ ଶରୀର ବନ୍ଦିଶାଳା ତ୍ୟାଗ କରି କାମଲୋକରେ ଫଳପ୍ରସୂ କର୍ମପନ୍ଥା ଅବଲମ୍ବନ କରି ପାରିବା ଏବଂ ଅନ୍ୟଥା ଯେଉଁମାନଙ୍କ ପାଖରେ ପହଞ୍ଚି

ସାହାଯ୍ୟ କରି ହୁଅନ୍ତା ନାହିଁ ସେପରି ଲୋକମାନଙ୍କୁ ସାହାଯ୍ୟ କରି ପାରିବା ଓ ସେମାନଙ୍କୁ ଏପରି ଭଲ ଭାବରେ ସାହାଯ୍ୟ ଓ ସାନ୍ତ୍ୱନା ଦେଇପାରିବା ଯାହା କି ଅନ୍ୟଥା ସମ୍ଭବ ହୁଅନ୍ତା ନାହିଁ । କାମନା ଶରୀର ଦ୍ୱାରା ନିଦ୍ରିତ ଅବସ୍ଥାରେ ସଂପାଦିତ ସେହି କାର୍ଯ୍ୟ ହୁଏତ ଜାଗ୍ରତ ଅବସ୍ଥାରେ ଆମ ସ୍ମରଣକୁ ନ ଆସିପାରେ ।

ଯେଉଁମାନଙ୍କ ମନ ପବିତ୍ର, ଭାବନା ଉଚ୍ଚ ଓ ହୃଦୟ ସେବା ଭାବରେ ମଗ୍ନ, ସେହିମାନଙ୍କର ଏପରି ବିକାଶ ଘଟିଥାଏ । ସେମାନେ ନିମ୍ନତର ଚେତନାର ସ୍ମରଣରେ ନ ଆଣି ମଧ୍ୟ ବର୍ଷ ବର୍ଷ ଧରିକାମଲୋକରେ କାର୍ଯ୍ୟ କରୁଥାଆନ୍ତି ଏବଂ ତାଙ୍କ ଅଭିଜ୍ଞତାରେ ସେ ଆଶାତୀତ ଭାବରେ ଜଗତ ହିତରେ ଶକ୍ତିବ୍ୟୟ କରି ଥାଆନ୍ତି । କର୍ମ ଯଦି ପ୍ରତିବନ୍ଧକ ନ ହୋଇ ଅନୁମତି ଦେବ ସେମାନେ ପାର୍ଥିବ ଓ କାମଲୋକ ଭିତରେ ଇଚ୍ଛା ଅନୁସାରେ ଚଳପ୍ରଚଳ କରୁଥିବା ଅବିଚ୍ଛିନ୍ନ ଚେତନା ଲାଭ କରି ପାରିବେ । ବିନା କଷ୍ଟରେ ସ୍ମରଣ ଶକ୍ତି ଏକ ଲୋକରୁ ଅନ୍ୟ ଲୋକକୁ ଯାଇ ଫେରି ଆସିବା ଭଳି ସେତୁ ଗଠିତ ହୋଇ ଯିବ ଯଦ୍ଦ୍ୱାରା କାମଲୋକରେ କାର୍ଯ୍ୟ ଶେଷ କରିବା ପରେ ପରେ ତିଳେ ହେଲେ ସ୍ମରଣ ଶକ୍ତି କ୍ଷୟ ନ କରି ପାର୍ଥିବ ଶରୀରକୁ ସେମାନେ ଫେରି ଆସି ପାରିବେ । ଯେଉଁମାନେ ସେବାମୟ ଜୀବନ ବାଛି ନେଇଛନ୍ତି ତାଙ୍କ ପାଇଁ ଏହା ନିଶ୍ଚିତ ଯେ ସେମାନେ ଦିନେ ନା ଦିନେ ଏହି ଅଖଣ୍ଡ ଚେତନା ଲାଭ କରିବେ । ତା'ପରେ ସେମାନଙ୍କ ଜୀବନରେ ଦିନଗୁଡ଼ିକ ସ୍ମରଣ ଯୋଗ୍ୟ କର୍ମମୟ ଓ ରାତ୍ରିଗୁଡ଼ିକ ଅଜ୍ଞାନବିଶ୍ରାମ କାଳ ନ ହୋଇ ଉଭୟ ଏକ ନିରବଚ୍ଛିନ୍ନ ସମଗ୍ରତା ବୋଲି ଉପଲବ୍ଧି ହେବ । ପାର୍ଥିବ ଶରୀରକୁ ତାର ପ୍ରୟୋଜନ ମୁତାବକ ବିଶ୍ରାମ ପାଇଁ ଦୂରରେ ରଖି ସେ କାମନା ଶରୀର ବ୍ୟବହାର କରି କାମଲୋକରେ କାର୍ଯ୍ୟରତ ରହି ପାରିବେ । ସେତେବେଳେ ଭାବନା ଶକ୍ତିର ସଂଯୋଗ ଥିବାରୁ ସେ ଜାଣି ପାରନ୍ତି କେତେବେଳେ ଏ ପାର୍ଥିବ ଶରୀର ଛାଡ଼ି କାମ ଲୋକକୁ ଯାଆନ୍ତି ବା କାମଲୋକରେ କ'ଣ ସବୁ ଘଟଣା ଘଟେ ଓ ସେଠାରୁ ଫେରି ଆସି ସେ ପୁଣି ପାର୍ଥିବଶରୀରରେ କେତେବେଳେ ପ୍ରବେଶ କରନ୍ତି । ଏହିପରି ସେ ସପ୍ତାହ ପରେ ସପ୍ତାହ, ବର୍ଷ ବରେ ବର୍ଷ ନିରବଚ୍ଛିନ୍ନ ଅକ୍ଳାନ୍ତ ଚେତନା ଘେନି ଚାଲନ୍ତି ଏବଂ ବ୍ୟକ୍ତିଗତ ଜୀବାତ୍ମାର ଅସ୍ତିତ୍ୱ ବିଷୟରେ

ସମ୍ପୂର୍ଣ୍ଣ ନିଃସନ୍ଦେହ ହୋଇ ଯାଆନ୍ତି । ସେ ନିଶ୍ଚିତ ଭାବେ ଜାଣି ପାରନ୍ତି ଯେ ତାଙ୍କର ଶରୀର ସେ ପରିଧାନ କରୁଥିବା ଏକ ପୋଷାକ ବ୍ୟତୀତ କିଛି ନୁହେଁ । ସେ ଏହାକୁ ଇଚ୍ଛା ଅନୁସାରେ ପରିଧାନ ବା ପରିତ୍ୟାଗ କରି ପାରିବେ ଏବଂ ଏହା ତାଙ୍କ ଶକ୍ତି ଓ ଜୀବନର ପ୍ରୟୋଜନ ସିନା ମାଧ୍ୟମ ନୁହେଁ । ଏହା ପ୍ରମାଣ କରି ଦିଏ ଯେ ଏହି ଶରୀରରୁ ମୁକ୍ତ ହେଲେ ଜୀବନ ଅଧିକ କ୍ରିୟାଶୀଳ ଓ ଭାବନା ଅଧିକ ବାଧାହୀନ ହୋଇ ପାରିବ ।

କୌଣସି ଲୋକ ଏହି ସ୍ତରକୁ ପହଞ୍ଚିଲେ ସଂସାର ଓ ତନ୍ମଧ୍ୟରେ ନିଜର ସମ୍ପର୍କ ପୂର୍ବାପେକ୍ଷା ଅଧିକ ଭଲ ଭାବରେ ବୁଝିପାରେ ଏବଂ ତା ସମ୍ମୁଖରେ ଥିବା ବିରାଟ ଭବିଷ୍ୟତ ଓ ଉଚ୍ଚତର ମାନବିକ ଅବସ୍ଥାର ସମ୍ଭାବନା ବିଷୟରେ ଅଧିକରୁ ଅଧିକ ଉପଲବ୍ଧି କରିପାରେ । କ୍ରମେ ସେ ଦେଖିପାରେ ଯେ ପ୍ରଥମେ ଯେପରି ମଣିଷ ପାର୍ଥିବ ଜଗତର ଓ ପରେ କାମ ଜଗତର ଚେତନା ଲାଭ କରି ପାରିଛି ଠିକ୍ ସେହିପରି ତା ସମ୍ମୁଖରେ ଉଚ୍ଚରୁ ଉଚ୍ଚତର ପରିସୀମା ପର୍ଯ୍ୟନ୍ତ ଯେଉଁ ସବୁ ଚେତନା ପ୍ରସାରିତ ହୋଇଛି ସେଗୁଡ଼ିକୁ ମଧ୍ୟ ସେ ଗୋଟିଏ ପରେ ଗୋଟିଏ ଲାଭ କରି ପାରିବ । ସେହି ସବୁ ଉଚ୍ଚତର ସ୍ତରରେ ଓ ଅଧିକ ବ୍ୟାପକ ଜଗତରେ ଅଧିକ ଦକ୍ଷତାର ସହିତ କାର୍ଯ୍ୟ କରି ମହାମାନବମାନଙ୍କର ଆଜ୍ଞାବହ ରୂପେ ମାନବ ଜାତିର ସାହାଯ୍ୟ ଓ ମଙ୍ଗଳ ନିମନ୍ତେ କାର୍ଯ୍ୟ କରି ପାରିବ । ଏହାପରେ ପାର୍ଥିବ ଜୀବନ ତାର ଉପଯୁକ୍ତ ସୀମା ଭିତରେ ରହିଯିବ । ଏପରି ଉନ୍ନତତର ଓ ପୂର୍ଣ୍ଣତର ଜୀବନ ଲାଭ କଲେ ପାର୍ଥିବ ଜଗତର ଘଟଣାମାନ ତାକୁ ପୂର୍ବପରି ଅଭିଭୂତ କରିପାରିବ ନାହିଁ । ମୃତ୍ୟୁର କର୍ତ୍ତୃତ୍ୱ ମଧ୍ୟ ତାକୁ ସ୍ପର୍ଶ କରି ପାରିବ ନାହିଁ କି ସେ ଯାହାକୁ ସାହାଯ୍ୟ କରିବ ତାକୁ ମଧ୍ୟ ସ୍ପର୍ଶ କରି ପାରିବ ନାହିଁ । ଇହ ଜଗତ ମଣିଷର କ୍ଷୁଦ୍ରତମ କର୍ମସ୍ଥଳୀ ରୂପେ ତାର ପ୍ରକୃତ ସ୍ଥାନ ପାଇବ ଏବଂ ପୂର୍ବପରି ଅନ୍ଧକାରାଚ୍ଛନ୍ନ ରହିବ ନାହିଁ । କାରଣ, ଉଚ୍ଚତର ଲୋକର ଉଜ୍ଜ୍ୱଳ ଦୀପ୍ତିରେ ଏହାର ସର୍ବାପେକ୍ଷା ଅଧିକ ଅନ୍ଧକାରମୟ ସ୍ଥାନ ମଧ୍ୟ ଆଲୋକିତ ହୋଇଯିବ ।

କାମନା ଶରୀରର କାର୍ଯ୍ୟ କଳାପ ଓ ସମ୍ଭାବନା ବିଷୟରେ ଆଲୋଚନା ପରେ ଏଥି ସହିତ ସମ୍ପୃକ୍ତ ଥିବା କେତେଗୁଡ଼ିଏ ଅସ୍ୱାଭାବିକ

ଘଟଣା ବିଷୟରେ ବିଚାର କରାଯାଉଛି । କାମନା ଶରୀର ଏହି ସଂସାରର ଜୀବନ କାଳ ମଧ୍ୟରେ ବା ମୃତ୍ୟୁ ପରେ ପାର୍ଥିବ ଶରୀରରୁ ବିଚ୍ଛିନ୍ନ ହୋଇ ଅନ୍ୟ ବ୍ୟକ୍ତି ନିକଟରେ ଆତ୍ମ ପ୍ରକାଶ କରିପାରେ । ଯେଉଁ ଲୋକ କାମନା ଶରୀରକୁ ସମ୍ପୂର୍ଣ୍ଣ ଆୟତ୍ତରେ ଆଣିପାରିଛି, ସେ ଯେକୌଣସି ସମୟରେ ପାର୍ଥିବ ଶରୀରକୁ ଛାଡ଼ି ଦେଇ ଦୂରରେ ଥିବା ବନ୍ଧୁ ପାଖକୁ କାମନା ଶରୀରରେ ଚାଲି ଯାଇପାରେ । ଅନ୍ୟ ବନ୍ଧୁଟି ଯଦି ଅତୀନ୍ଦ୍ରିୟ ଦୃଷ୍ଟି ଆୟତ୍ତ କରିଥାଏ, ତେବେ ସେ ଏହି କାମନା ଶରୀରକୁ ଦେଖିପାରେ । ତା ନ ହେଲେ କାମନା ଶରୀରଧାରୀ ବନ୍ଧୁ ସେହି ସ୍ଥାନର ଚାରିପାଖରେ ଥିବା ବାୟୁ ମଣ୍ଡଳର ଭୌତିକ ପଦାର୍ଥ ସଂଗ୍ରହ କରି ଶରୀରକୁ ଟିକିଏ ଗାଢ଼ କରି ଦେଇ ପାରିଲେ ତାର ବନ୍ଧୁ ତାକୁ ସ୍ଥୂଳ ଦୃଷ୍ଟିରେ ମଧ୍ୟ ଦେଖିପାରେ । ଦୂର ସ୍ଥାନରେ ଥିବା ବନ୍ଧୁମାନଙ୍କୁ ଅହେତୁକ ଭାବରେ ହଠାତ୍ ଦେଖିବାର ଏହା ହିଁ କାରଣ ଅଟେ । ଏ ଧରଣର ଅଦ୍ଭୁତ ଘଟଣା ଘଟିବା ସମ୍ପର୍କରେ ଲୋକମାନେ ଯେତିକି ଜାଣନ୍ତି ତା ଅପେକ୍ଷା ଖୁବ୍ ବେଶୀ ପରିମାଣରେ ଘଟିଥାଏ । କିନ୍ତୁ କାଳେ କିଏ ଏହାକୁ ଅନ୍ଧ ବିଶ୍ୱାସ ବୋଲି କହି ହସରେ ଉଡାଇ ଦେବ ସେହି ଡରରେ ଏମରି ଅନୁଭୂତିକୁ ଅନେକ ଲୋକ ସର୍ବସାଧାରଣଙ୍କ ଆଗରେ ପ୍ରକାଶ କରନ୍ତି ନାହିଁ । ସୌଭାଗ୍ୟର କଥା ସେ ପ୍ରକାର ଭୟ କ୍ରମେ ଦୂର ହୋଇ ଯାଉଛି । ଲୋକମାନେ ଯାହା ସତ ବୋଲି ଜାଣୁଛନ୍ତି ତାକୁ ପ୍ରକାଶ କରିବା ଭଳି ସାହସ ଓ ସାଧାରଣ ବୁଦ୍ଧି ଖଟାଇ ପାରିଲେ ପାର୍ଥିବ ଶରୀରକୁ ଛାଡ଼ି ଦେଇ ଅନେକ ଦୂରରେ କାମନା ଶରୀର ଦେଖା ଦେଉଥିବା ବିଷୟରେ ଅନେକ ପ୍ରମାଣ ଅଚିରେ ସଂଗୃହୀତ ହୋଇ ପାରିବ ।

କାମନା ଶରୀର ଜଡ଼ ପଦାର୍ଥକୁ ଆଶ୍ରୟ ନ କରି ଅନେକ ସମୟରେ ବିଶେଷ ପରିସ୍ଥିତିରେ ଅତୀନ୍ଦ୍ରିୟ ଦୃଷ୍ଟି ନ ଥିବା ଲୋକମାନଙ୍କୁ ଦେଖା ଦେଇଥାଏ । ଯଦି ଜଣେ ଲୋକର ସ୍ନାୟୁ-ମଣ୍ଡଳ ନିତାନ୍ତ କ୍ଳାନ୍ତ ହୋଇଯାଇଥାଏ ଓ ପାର୍ଥିବ ଶରୀର ଅତି ଦୁର୍ବଳ ଅବସ୍ଥାରେ ଥାଏ, ତାହାହେଲେ ଇଥରୀୟ ଯମଜ ଉପରେ ନିର୍ଭରଶୀଳ ତାର ସ୍ନାୟବିକ କ୍ରିୟା ଅସ୍ୱାଭାବିକ ଭାବେ ଉତ୍ତେଜିତ ହୋଇଯାଏ ଏବଂ ସେହି ଅବସ୍ଥାରେ ମଣିଷ ସାମୟିକ ଅତୀନ୍ଦ୍ରିୟ ଦୃଷ୍ଟି ଲାଭ କରିଥାଏ । ଉଦାହରଣ ସ୍ୱରୂପ, ଯେଉଁ ମାତା

ବିଦେଶରେ ଥିବା ପୁତ୍ରର ସାଂଘାତିକ ପୀଡା ଖବର ପାଇ ଅତି ଉଦ୍‌ବିଗ୍ନ ଅଛନ୍ତି, ରାତ୍ରିରେ ତାଙ୍କର ଜୀବନୀ ଶକ୍ତି କ୍ଷୀଣତମ ଅବସ୍ଥାରେ ଥିବାବେଳେ ଯଦି ତାଙ୍କ ପୁଅ ତାଙ୍କୁ ଭାବୁ ଥାଆନ୍ତି ଓ ସେତେବେଳେ ସଜ୍ଞାହୀନ ଅବସ୍ଥାରେ ଥାଆନ୍ତି ତାହା ହେଲେ ସେ କାମନା ଶରୀରରେ ଆସି ମାତାଙ୍କୁ ଦେଖି ଯିବାର ସୁଯୋଗ ପାଆନ୍ତି ଏବଂ ମାତା ମଧ୍ୟ ତାଙ୍କୁ ଦେଖିବା ସମ୍ଭବ ହୋଇଥାଏ । ଯଦି ମରିବାକୁ ଯାଉ ଥିବା କୌଣସି ବ୍ୟକ୍ତି କାହାର ସ୍ନେହରେ ନିବିଡ଼ ଭାବରେ ବନ୍ଧା ଥିବା ଯୋଗୁ ତାକୁ ଦେଖିବା ପାଇଁ ଦୃଢ଼ ଇଚ୍ଛା ପୋଷଣ କରୁଥିବା ଅବସ୍ଥାରେ ବା ଏକ ନିର୍ଦ୍ଦିଷ୍ଟ ଖବର ଜଣାଇବାକୁ ଆଗ୍ରହୀ ଥାଇ ସେ ଖବର ଦେବା ପୂର୍ବରୁ ଦେହ ତ୍ୟାଗ କରେ ତେବେ ଏପରି ଘଟିଥାଏ ।

କାମନା ଶରୀରକୁ ଯଦି ମୃତ୍ୟୁ ପରେ, ଅର୍ଥାତ୍ ସ୍ଥୂଳ ଶରୀର ଓ ଇଥରୀୟ ଯମଜଙ୍କୁ ଛାଡ଼ି ଦେବା ପରେ, ଲକ୍ଷ୍ୟ କରାଯାଏ, ସେଥିରେ ପରିବର୍ତ୍ତନ ଘଟୁଥିବାର ଦେଖିବାକୁ ମିଳେ । ପାର୍ଥିବ ଶରୀର ସହିତ ସଂଯୁକ୍ତ ଥିବା ସମୟରେ କାମ-ପଦାର୍ଥର ବିଭାଗଗୁଡ଼ିକ ପରସ୍ପର ସହିତ ଗୋଳିଆ ମିଶା ହୋଇ ଘନ ଓ ପତଳା ସ୍ତରର ପଦାର୍ଥଗୁଡ଼ିକ ପରସ୍ପର ଭିତରେ ଅନୁପ୍ରବେଶ କରି ରହି ଥାଆନ୍ତି । ମୃତ୍ୟୁ ପରେ ପୁଣି ଥରେ ପଦାର୍ଥର ସ୍ଥୂଳ-ସୂକ୍ଷ୍ମ ବିଭାଗ କ୍ରମରେ ସେଗୁଡ଼ିକର ସଂସ୍ଥାପନ ଘଟେ । କାମଲୋକର ବିଭିନ୍ନ ସ୍ତରର କଣିକାମାନ ନିଜ ନିଜ ଘନତ୍ୱ ଅନୁସାରେ ସ୍ତରୀଭୂତ ହୁଅନ୍ତି ଏବଂ ସମାନ ଘନତ୍ୱର କଣିକାଗୁଡ଼ିକ ଗୋଟିଏ ସ୍ତରରେ ରହିଯାଆନ୍ତି । ସେଥିପାଇଁ କାମନା ଶରୀର ଏକ ସ୍ତରୀଭୂତ ଅବସ୍ଥା ଧାରଣ କରେ ଓ କେତେଗୁଡ଼ିଏ ସମ କୈନ୍ଦ୍ରିକ ଆବରଣରେ ପରିଣତ ହୁଏ । ଏଥିରେ ସବୁଠାରୁ ଘନ ସ୍ତରଟି ବାହାରକୁ ରହେ ଏବଂ ସୂକ୍ଷ୍ମରୁ ସୂକ୍ଷ୍ମତର ସ୍ତରଗୁଡ଼ିକ ଭିତରକୁ ଭିତରକୁ ରହେ । ଏହି ସମ୍ପର୍କରେ ମଧ୍ୟ କାମନା ଶରୀରକୁ ଇହ ଲୋକର ଜୀବନ କାଳ ମଧ୍ୟରେ ଶୋଧନ କରିବାର ଗୁରୁତ୍ୱ ବୁଝାପଡ଼େ । କାରଣ କାମନା ଶରୀର ବିଶୋଧିତ ହୋଇ ନଥିଲେ ମୃତ୍ୟୁ ପରେ ଆମ ଇଚ୍ଛା ଅନୁସାରେ ଆମେ କାମଲୋକର ବିଭିନ୍ନ ବିଭାଗରେ ବିଚରଣ କରି ପାରିବା ନାହିଁ । ସେ ଲୋକରେ ସାତ ଗୋଟି ବିଭାଗ ଅଛି । କାମନା ଶରୀରର ବାହାରକୁ ଥିବା ସ୍ତରଟି ଯେଉଁ ବିଭାଗର ବସ୍ତୁରେ ତିଆରି କାମନା ଶରୀର ସେହି ବିଭାଗର ସୀମା ଭିତରେ ରହିଯାଏ ।

ବାହାରକୁ ଥିବା ଘନସ୍ତରଟି ଜୀର୍ଣ୍ଣ ହୋଇ ନଷ୍ଟ ହେବା ପରେ ସେ ତାର ଉପର ବିଭାଗକୁ ଯାଇପାରେ । ସେ ଏହିପରି ଭାବରେ ଗୋଟିକ ପରେ ଗୋଟିଏ ବିଭାଗ ଦେଇ ଗତିକରେ ।

କୌଣସି ଲୋକ ଅତିନିମ୍ନ ଓ ପାଶବିକ ପ୍ରବୃତ୍ତି ଯୁକ୍ତ ହୋଇଥିଲେ, ତାର କାମନା ଶରୀରରେ ବହୁତ ପରିମାଣରେ ଅମାର୍ଜିତ ଓ ସବୁଠାରୁ ଘନ କାମ-ପଦାର୍ଥ ରହିଥାଏ । ସେଗୁଡ଼ିକ ତାକୁ କାମଲୋକର ନିମ୍ନତମ ବିଭାଗରେ ହିଁ ଆବଦ୍ଧ ରଖନ୍ତି । ସେହି ବହିରାବରଣ ଜୀର୍ଣ୍ଣ ହୋଇ ତହିଁରୁ ବହୁ ଅଂଶ ମିଳେଇ ନ ଯିବା ପର୍ଯ୍ୟନ୍ତ ତାକୁ ସେହି ବିଭାଗରେ ରହିବାକୁ ପଡ଼େ । ଏହା ସବୁଠାରୁ ଅପ୍ରୀତିକର ବିଭାଗ । ଏଥିରେ ରହିବା ସମୟରେ ଏହାର ପାରିପାର୍ଶ୍ୱିକ ଜନିତ କଷ୍ଟ ଭୋଗିବାକୁ ପଡ଼େ । ଏହି ବାହାରର ଖୋଳ ଯଥେଷ୍ଟ ପରିମାଣରେ ମିଳେଇ ଦୁର୍ବଳ ହୋଇଯିବା ପରେ ମଣିଷ କାମଲୋକର ପରବର୍ତ୍ତୀ ବିଭାଗକୁ ଯାଏ । ଏମିତି କହିଲେ ବୋଧହୁଏ ଭଲ ହେବ, ସେ ଉଚ୍ଚତର ବିଭାଗର ସ୍ପନ୍ଦନ ଗ୍ରହଣ କରିବାକୁ ସକ୍ଷମ ହେବାଦ୍ୱାରା ଅନ୍ୟ ଗୋଟିଏ ଅଞ୍ଚଳରେ ଉପସ୍ଥିତ ହେବା ପରି ତାକୁ ଜଣାଯାଏ । ଷଷ୍ଠ ବିଭାଗର ପଦାର୍ଥରେ ତିଆରି ଆବରଣ କ୍ଷୟ ହେବା ପର୍ଯ୍ୟନ୍ତ ସେ ସେଠାରେ ରହେ ଏବଂ ତା ପରେ ପଞ୍ଚମ ବିଭାଗକୁ ଯିବା ସମ୍ଭବ ହୁଏ । ଏହିପରି ପ୍ରତ୍ୟେକ ବିଭାଗରେ ତାର ରହିବା ସମୟ ତା ଶରୀରରେ ସେ ବିଭାଗଭୁକ୍ତ ପଦାର୍ଥର ପରିମାଣ ଉପରେ ନିର୍ଭର କରେ । ଅମାର୍ଜିତ ବିଭାଗର ପଦାର୍ଥ ଯେତେ ଅଧିକ ହେବ, କାମଲୋକର ନିମ୍ନତର ସ୍ତରରେ ତାର ସ୍ଥିତି ସେତେ ଅଧିକ ଦିନ ହେବ । ଆମେ ପାର୍ଥିବ ଜୀବନ କାଳ ମଧ୍ୟରେ ଯେତେ ଅଧିକ ପରିମାଣରେ ଏପରି ପଦାର୍ଥକୁ ଦୂର କରି ପାରିବା ମୃତ୍ୟୁର ପରପାରରେ ନିମ୍ନତର ବିଭାଗରେ ଆମର ସ୍ଥିତି ସେତେ ଅଳ୍ପ କାଳ ସ୍ଥାୟୀ ହେବ । ଅନେକ କ୍ଷେତ୍ରରେ ଯେଉଁଠି ଏପରି ଅମାର୍ଜିତ ପଦାର୍ଥଗୁଡ଼ିକୁ ଦୀର୍ଘ ଓ କଠିନ ପନ୍ଥା ଅବଲମ୍ବନ କରି ସମ୍ପୂର୍ଣ୍ଣରୂପେ ଦୂରକରିହୁଏ ନାହିଁ, ସେଠାରେ ଚେତନାକୁ ନିମ୍ନତର ବୃତ୍ତିରୁ କ୍ରମାଗତ ଏପରି ଭାବରେ ପ୍ରତ୍ୟାହୃତ କରି ନିଆଯାଇ ପାରେ ଯଦ୍ୱାରା ଏ ସ୍ଥୂଳତର ପଦାର୍ଥ ଗୁଡ଼ିକ ଚେତନାର ଏକବାହନ ରୂପେ କ୍ରିୟାଶୀଳ ହୋଇ ପାରିବେ ନାହିଁ । ଏପରି ଅବସ୍ଥାରେ ମନୁଷ୍ୟ ଯଦିଓ କାମଲୋକର ନିମ୍ନତର ସ୍ତରରେ କିଛି ଦିନ

ରହିଯାଏ ତଥାପି ଅବାଞ୍ଛିତ ପଦାର୍ଥଗୁଡ଼ିକର ଅପ୍ରୀତିକର ଅବସ୍ଥା ଅନୁଭବ କରେ ନାହିଁ । ଏହି ସମୟଟି ଶାନ୍ତିରେ ଶୋଇ କଟାଇ ଦିଏ । ତାର ଚେତନା ଏ ପ୍ରକାର ପଦାର୍ଥ ଜରିଆରେ ପ୍ରକାଶ ଲାଭ କରିବା ଇଚ୍ଛା ରଖି ନଥିବାରୁ ସେ କାମଲୋକରେ ଏସବୁ ପଦାର୍ଥ ସହିତ ସମ୍ପର୍କରଖେ ନାହିଁ ।

ଯେଉଁ ଲୋକ କାମଲୋକର ପ୍ରତି ବିଭାଗର ପବିତ୍ରତମ ଓ ସୂକ୍ଷ୍ମତମ କଣିକା ସଂଗ୍ରହ କରି ତାର କାମନାଶରୀରକୁ ଏପରି ଶୁଦ୍ଧ କରି ଗଢ଼ିଛି ଯେ ତାକୁ ଆଉ ଅଳ୍ପ ମାର୍ଜିତ କରି ଦେଲେ ଉଚ୍ଚତର ବିଭାଗର ପଦାର୍ଥରେ ମିଶି ଯିବ, ତାର କାମଲୋକରେ ସ୍ଥିତି ଅଳ୍ପକାଳ ପାଇଁ ହୋଇଥାଏ । ପ୍ରତ୍ୟେକ ଦୁଇଟି ବିଭାଗର ପଦାର୍ଥ ମଧ୍ୟରେ ଗୋଟିଏ ସନ୍ଧି ସ୍ଥଳ ଅଛି ଯେପରି ଆମ ସ୍ଥୂଳ ଜଗତରେ ବରଫ ଜଳ ପୁଣି ଜଳ ଓ ବାଷ୍ପ ଭିତରେ । ଉଦାହରଣ ସ୍ୱରୂପ ଗୋଟିଏ ନିର୍ଦ୍ଦିଷ୍ଟ ତାପମାତ୍ରା ପର୍ଯ୍ୟନ୍ତ ବରଫ ରହିପାରେ କିନ୍ତୁ ତାହା ଅତିକ୍ରମ କଲେ ତାହା ତରଳି ଜଳରେ ପରିଣତ ହୋଇଯାଏ । ପୁଣି ଜଳ ମଧ୍ୟ ନିର୍ଦ୍ଦିଷ୍ଟ ତାପମାତ୍ରା ପର୍ଯ୍ୟନ୍ତ ଜଳ ହୋଇ ରହିପାରେ କିନ୍ତୁ ତହିଁରୁ ଅଧିକ ହେବା ମାତ୍ରେ ଏହା ବାଷ୍ପରେ ପରିଣତ ହୋଇଯାଏ । ସେହିପରି କାମ ପଦାର୍ଥର ଯେକୌଣସି ଗୋଟିଏ ବିଭାଗର ପଦାର୍ଥ ସୂକ୍ଷ୍ମତାର ଗୋଟିଏ ନିର୍ଦ୍ଦିଷ୍ଟ ସୀମା ପର୍ଯ୍ୟନ୍ତ ସେହି ବିଭାଗ ପରିସୀମା ଭିତରେ ରହେ । କିନ୍ତୁ ତାକୁ ଅଧିକ ବିଶୋଧନ କଲେ ତାହା ଉଚ୍ଚତର ବିଭାଗର ପଦାର୍ଥରେ ପରିଣତ ହୋଇଯାଏ । କାମନା ଶରୀରର ପ୍ରତ୍ୟେକ ସ୍ତର ଯଦି ଏହିପରି ଭାବରେ ବିଶୋଧିତ ହୋଇ ତହିଁରେ ଥିବା କାମ ଲୋକର ବିଭିନ୍ନ ବିଭାଗର ପଦାର୍ଥ ସବୁ ଶେଷ ସୂକ୍ଷ୍ମତମ ଅବସ୍ଥାରେ ପହଞ୍ଚିଯାଇଥାଏ, ତାହା ହେଲେ ସେ ମଣିଷ କାମଲୋକରେ ଅଭାବନୀୟ ବେଗରେ ଗତି କରି ବାଧାହୀନ ଭାବରେ ଉଚ୍ଚତର ଲୋକକୁ ଗମନ କଲାବେଳେ ବିଜୁଳି ଝଲକ ପରି ଦେଖାଯାଏ ।

ପାର୍ଥିବ ଶରୀର ଓ ମାନସିକ ପ୍ରକ୍ରିୟାଦ୍ୱାରା କାମନା ଶରୀରକୁ ଶୋଧନ କରିବା ସମ୍ବନ୍ଧରେ ଆଉ ଗୋଟିଏ ବିଚାର କରିବା କଥା ହେଲା, ପର ଜନ୍ମରେ ବ୍ୟବହାର କରିବା ପାଇଁ କାଳ କ୍ରମେ ଯେଉଁ ନୂତନ କାମନା ଶରୀର ଧାରଣ କରିବ ତା ଉପରେ ଏହାର କି ପ୍ରକାର ପ୍ରଭାବ ରହିଛି ।

ଯେତେବେଳେ ମଣିଷ କାମଲୋକରୁ ଦେବଚନ (ସ୍ୱର୍ଗଲୋକ) କୁ ଯିବ ସେ କିଛି ଅନିଷ୍ଟକାରୀ ସଂକଳ୍ପ ରୂପ ସେଠାକୁ ନେଇ ଯାଇପାରିବ ନାହିଁ, କିମ୍ବା ସ୍ୱର୍ଗ ଲୋକର ପଦାର୍ଥ କାମଲୋକର ଅମାର୍ଜିତ, କାମନା ବାସନାର ସ୍ଥୂଳ ସ୍ପନ୍ଦନ ଗ୍ରହଣ କରି ପାରିବ ନାହିଁ । ଫଳତଃ, ମଣିଷ ଶେଷରେ କାମନା ଶରୀରର ଅବଶେଷକୁ ତ୍ୟାଗ କରି ଗଲାବେଳେ କେବଳ ସୁପ୍ତ ବୀଜାଣୁ ବା ପ୍ରବଣତାଟି ସାଙ୍ଗରେ ନେଇ ପାରିବ, ଯାହା କି ପୁଷ୍ଟିକାରକ ପଦାର୍ଥ ପାଇଲେ ବା ପ୍ରକାଶର ସୁବିଧା ପାଇଲେ ପୁଣି କାମଲୋକରେ ଅନିଷ୍ଟକାରୀ କାମନା ବାସନା ରୂପେ ବିକଶିତ ହୋଇପାରିବ । ଏଗୁଡ଼ିକ ତାହାର ଦେବଚନ ସମୟରେ ସୁପ୍ତ ଅବସ୍ଥାରେ ଥାଆନ୍ତି । ସେ ଭୂଲୋକରେ ପୁନର୍ଜନ୍ମ ପାଇଁ ଫେରିବା ବେଳେ ସେ ସୁପ୍ତ ବୀଜାଣୁ ସବୁ ବହିର୍ଦିଗକୁ ଠେଲି ହୋଇ ଆସନ୍ତି । ଏକ ପ୍ରକାର ଚୁମ୍ବକୀୟ ପ୍ରକ୍ରିୟାଦ୍ୱାରା ସେମାନଙ୍କର ଆତ୍ମପ୍ରକାଶ ଅନୁକୂଳ କାମ ପଦାର୍ଥ ସବୁ ସଂଗ୍ରହ କରି ନିଅନ୍ତି । ନିଜର ପ୍ରକୃତି ଅନୁଯାୟୀ କାମ ପଦାର୍ଥରେ ପରିପୁଷ୍ଟ ହୋଇ ଅନତି ବିଳମ୍ବରେ ଘଟୁଥିବା ମଣିଷର ପୁନର୍ଜନ୍ମ ନିମନ୍ତେ କାମନା ଶରୀର ଆଂଶିକ ଭାବରେ ଗଠନ କରନ୍ତି । ଏହିପରି ଭାବରେ ଆମେ ଯେ କେବଳ ଆମର ଏକ କାମନା ଶରୀରରେ ଏବେ ବାସ କରୁଛୁ ତାହା ନୁହେଁ, ଅନ୍ୟ ଏକ ଜୀବନରେ ଆମର କାମନା ଶରୀର କି ପ୍ରକାରର ହେବ ତାହା ମଧ୍ୟ ଗଠନ କରୁଛୁ । ଆମର ପାରୁ ପର୍ଯ୍ୟନ୍ତ କାମନା ଶରୀରକୁ ଶୋଧନ କରିବାର ପ୍ରଧାନ କାରଣ ହେଲା ବର୍ତ୍ତମାନର ଜ୍ଞାନ ବଳରେ ଭବିଷ୍ୟତ ଉନ୍ନତିକୁ ସୁନିଶ୍ଚିତ କରି ଦେବା ।

ଆମର ଜୀବନଗୁଡ଼ିକ ଗୋଟିଏ ସୂତ୍ରରେ ଗୁନ୍ଥା । ସେଥିରୁ କୌଣସି ଗୋଟିକୁ ହେଲେ ତାର ପୂର୍ବବର୍ତ୍ତୀ ବା ପରବର୍ତ୍ତୀ ଜୀବନରୁ ଅଲଗା କରି ଦେଇ ହେବ ନାହିଁ । ସତ କହିଲେ, ଏ ସମସ୍ତ ଭିତରେ ଆମର ଗୋଟିଏ ମାତ୍ର ଜୀବନ ରହିଛି । ଆମେ ଏଠାରେ ଯାହାକୁ ଆମର ଜୀବନ ବୋଲି ଭାବୁଛୁଁ ବା କହୁଛୁଁ ତାହା ଆମ ସମଗ୍ର ଜୀବନର ଗୋଟିଏ ଗୋଟିଏ ଦିନ ମାତ୍ର । ଆମର ଜୀବନ କେବେ ହେଲେ ଆମେ ଖଣ୍ଡିଏ ନୂତନ ସାଦା କାଗଜ ଫର୍ଦରେ ଗୋଟିଏ ସମ୍ପୂର୍ଣ୍ଣ ନୂତନ ଗଳ୍ପ ଲେଖିବା ପରି ଆରମ୍ଭ ହୁଏ ନାହିଁ, ବରଂ ଗୋଟିଏ ନୂତନ ଅଧ୍ୟାୟ ଆରମ୍ଭ କରି ପୁରାତନ ଗଳ୍ପକୁ ବଢ଼େଇ ଦେଲା ପରି ହୋଇଥାଏ । ଆମେ

ଦିନ ବେଳେ ଟଙ୍କା କରଜ କରି ରାତିରେ ଶୋଇ ପଡ଼ିଲେ ଯେପରି ଦେଣା ମେଣ୍ଟିଯାଏ ନାହିଁ ଏବଂ ଋଣ ପରିଶୋଧ ପର୍ଯ୍ୟନ୍ତ ଦାବୀ ବଳବତ୍ତର ରହିଥାଏ, ସେହିପରି ଥରେ ପାର୍ଥିବ ଜୀବନରୁ ବିଶ୍ରାମ ନେଲେ ବା ମରିଗଲେ କାମନା ବାସନାର ଦେଣା ନାହିଁ । ମଣିଷର ଜୀବନ ନିରବଚ୍ଛିନ୍ନ, ଅଖଣ୍ଡ, ସାଂସାରିକ ଜୀବନଗୁଡ଼ିକ ପରସ୍ପର ସଂଲଗ୍ନ, ଅଲଗା ଅଲଗା ନୁହେଁ । ବିଶୋଧନ ଓ କ୍ରମ ବିକାଶ ପ୍ରକ୍ରିୟା ମଧ୍ୟ ନିରବଚ୍ଛିନ୍ନ ଭାବରେ ଇହ ଲୋକରେ ଅନେକ ଜୀବନ କାଳ ଧରିଚାଲିଥାଏ । ଦିନେ ନା ଦିନେ ପ୍ରତ୍ୟେକ ଲୋକକୁ ଏହି ବିଶୋଧନ କାର୍ଯ୍ୟ କରିବାକୁ ପଡ଼ିବ । ନିମ୍ନ ଶ୍ରେଣୀର ସମ୍ବେଦନରେ କ୍ଳାନ୍ତି ଜାତ ହେବ । ପଶୁ ପ୍ରକୃତିର ବଶୀଭୂତ ହୋଇ ରହିବାରେ ଅବସାଦ ଆସିବ ଓ ଇନ୍ଦ୍ରିୟର ଅତ୍ୟାଚରରେ ବ୍ୟଥା ଜାତ ହେବ । ତା' ପରେ ମଣିଷ ଏସବୁର ଅଧୀନତା ସ୍ୱୀକାର କରି ରହିବାକୁ ଆଉ ରାଜି ହେବ ନାହିଁ ଏବଂ ତାର ବନ୍ଧନ ଛିନ୍ନ କରିବାକୁ ଚାହିଁବ ।

ବାସ୍ତବିକ, ବନ୍ଧନକୁ ଛିନ୍ନ କରିବା ଯେତେବେଳେ ନିଜ ଶକ୍ତି ଭିତରର କଥା, ଆମେ କାହିଁକି ତାକୁ ଦୀର୍ଘ କାଳ ରହିବାକୁ ଦେବା ? ଆମରି ହାତ ବିନା ଅନ୍ୟର ହାତ ଆମକୁ ବାନ୍ଧି ପାରିବ ନାହିଁ କି ଆମରି ହାତ ବିନା ଆଉ କାହାରି ହାତ ଆମକୁ ମୁକ୍ତ କରି ପାରିବ ନାହିଁ । ଆମର ନିର୍ବାଚନ କରିବାର ଅଧିକାର ଅଛି, ଇଚ୍ଛାର ସ୍ୱତନ୍ତ୍ରତା ଅଛି ଏବଂ ଶକ୍ତି ଅଛି ଦିନେ ନା ଦିନେ ଆମେ ସମସ୍ତେ ଉଚ୍ଚତର ଲୋକରେ ଏକତ୍ର ହେବା । ତେବେ ଏହି ମୁହୂର୍ତ୍ତରେ ଆମର ବନ୍ଧନ ଛିଡ଼ାଇ ଆମର ଦିବ୍ୟ ଜୀବନ ଦାବୀ ନ କରିବା କାହିଁ ? ଯେତେବେଳେ ମଣିଷ ସଂକଳ୍ପ ବଦ୍ଧ ହେବ ଯେ ସେ ତାର ନିମ୍ନତର ପ୍ରକୃତିକୁ ଉଚ୍ଚତର ପ୍ରକୃତିର ସେବକ କରି, ଉଚ୍ଚତର ଶରୀର ଗୁଡ଼ିକୁ ଇହ ଲୋକରେ ପାର୍ଥିବ ଚେତନା ମାଧ୍ୟମରେ ଗଢ଼ିବ ଓ ଯେଉଁ ଉଚ୍ଚତର ସମ୍ଭାବନାଗୁଡ଼ିକ ଦିବ୍ୟ ବିଧାନ ବଳରେ ତାହାର ଅଧିକାର ଭୁକ୍ତ ହୋଇଥିଲେ ସୁଦ୍ଧା ପଶୁ ପ୍ରକୃତିର ଜୀବନଯାତ୍ରା ଯୋଗୁ ଆବୃତ୍ତ ହୋଇ ଯାଇଛି, ତାହା ସବୁ ଇହ ଲୋକରେ ଲାଭ କରିବ, ସେତେବେଳେ ତାର ମୁକ୍ତି ଲାଭ ପାଇଁ ଶୃଙ୍ଖଳ ଛିନ୍ନ ହେବାକୁ ଆରମ୍ଭ କରିବ ।



# ମାନସ ଶରୀର

ଆମେମାନେ ମଣିଷର ପାର୍ଥିବ ଓ କାମନା ଶରୀର ବିଷୟରେ କେତେକାଂଶରେ ଆଲୋଚନା କଲେ । ସଂସାରରେ କାର୍ଯ୍ୟ କରୁଥିବା ପାର୍ଥିବ ଶରୀରର ଦୃଶ୍ୟ ଓ ଅଦୃଶ୍ୟ ଉଭୟ ଭାଗ ଅଧ୍ୟୟନ କଲେ । ଏମାନଙ୍କ କାର୍ଯ୍ୟର ବିଭିନ୍ନ ଦିଗ ଓ ବିକାଶ ଲାଭର ଧାରା ଓ ସେମାନଙ୍କୁ ବିଶୋଧନ କରିବାର କ୍ରମ ବିଚାର କଲେ । ସେହିପରି କାମନା ଶରୀର ବିଷୟ ବିଶ୍ଳେଷଣ କରି ଏହାର ବିକାଶ, କାମଲୋକରେ ଅଭିବ୍ୟକ୍ତି ଓ କାର୍ଯ୍ୟ ସହିତ ସମ୍ପୃକ୍ତ ଘଟଣାମାନ ଓ ତାର ବିଶୋଧନ ପ୍ରକ୍ରିୟା ବିଷୟରେ ଆଲୋଚନା କଲେ । ସୁବିଶାଳ ବିଶ୍ୱର ସାତଗୋଟି ଲୋକରୁ ଦୁଇଟିରେ ମଣିଷର କାର୍ଯ୍ୟ ବିଷୟରେ କିଛି ଜ୍ଞାନ ଲାଭ ହେଲା । ଏହାପରେ ଆମେ ତୃତୀୟ ମହାଲୋକ ''ମାନସଲୋକ'' ବିଷୟ ଆଲୋଚନା କରିବା । ଆମେ ଯେତେବେଳେ ଭୂଲୋକ ଓ କାମଲୋକ ବିଷୟରେ କିଛି କିଛି ଜାଣି ଗଲେଣି, ଭୂଲୋକ, କାମଲୋକ ଓ ମାନସଲୋକ ବା ସ୍ୱର୍ଗଲୋକ ଆମ ଦୃଷ୍ଟି ସମ୍ମୁଖରେ ଏକତ୍ର ରହିବ । ଅର୍ଥାତ୍ ପୃଥ୍ୱୀ ଗୋଲକ ଓ ତାକୁ ବେଷ୍ଟନ କରି ଥିବା ଗୋଟିକ ପରେ ଗୋଟିଏ ଅନ୍ୟଦୁଇଟି ବଳୟ, ଏପରି ତିନି ଗୋଟି ଲୋକ ବା ଅଞ୍ଚଳ ଆମ ଦୃଷ୍ଟିରେ ରହିବ । ଏହି ତିନୋଟି ଯାକରେ ପାର୍ଥିବ ଜୀବନକାଳ ମଧ୍ୟରେ ମଣିଷ କାର୍ଯ୍ୟ କରିଥାଏ । ମୃତ୍ୟୁ ପରେ ଅର୍ଥାତ୍ ଏକ ପାର୍ଥିବ ଜୀବନ ପର୍ଯ୍ୟାୟର ସମାପ୍ତି ଓ ଜନ୍ମ ନେଇ ଅନ୍ୟ ଏକ ପାର୍ଥିବ ଜୀବନର ଆରମ୍ଭ, ଏ ଦୁଇଟିର ମଧ୍ୟବର୍ତ୍ତୀ ସମୟରେ ମଧ୍ୟ ଏଥିରେ ବାସ କରେ । ଏହି ତିନୋଟି ସମକେନ୍ଦ୍ରିକ ଗୋଲକ ମଣିଷର ଶିକ୍ଷା କ୍ଷେତ୍ର ତଥା ଅଧିକାରଭୁକ୍ତ ରାଜ୍ୟ । ଏହା ଭିତରେ ସେ ତାର ପୁଷ୍ଟି ସାଧନ କରେ । ଏହାରି ଭିତରେ ତାର କ୍ରମବିକାଶର ତୀର୍ଥ ଯାତ୍ରା । କାରଣ, ଦୀକ୍ଷା ଲାଭ ନ ହେଲା ପର୍ଯ୍ୟନ୍ତ ସେ ସଚେତନ ଭାବରେ ଏ ତିନିଲୋକ ବାହାରେ କିଛି କରି ପାରିବ ନାହିଁ । ସୁତରାଂ ଏହି ତିନିଲୋକରେ ଯତ୍ନ କରିବା ବ୍ୟତୀତ ତାର ଅନ୍ୟ କିଛି ଉପାୟ ନାହିଁ ।

ଏହି ତୃତୀୟ ଅଞ୍ଚଳଟିକୁ ''ମାନସ ଲୋକ''କୁହାଯାଉଛି । ଏହା

ବ୍ରହ୍ମବିଦ୍ୟାନୁରାଗୀମାନେ କହୁଥିବା 'ଦେବଚନ' ବା ଦେବଲୋକ ଅର୍ଥାତ୍ ସୁଖମୟ ଲୋକ ବା ପୁଣ୍ୟମୟ ଦେଶକୁ ଧାରଣ କରିଛି । କିନ୍ତୁ ଦେବଚନ ସହ ଅଭିନ୍ନ ନୁହେଁ । ଏହାର ପ୍ରକୃତି ଓ ଅବସ୍ଥା ଘେନି ଏହା ଦେବଚନ ବୋଲି ନାମିତ ହୋଇଛି । ଦୁଃଖ ବା କଷ୍ଟ ଦାୟକ ଗୁଣ ଥିବା କୌଣସି ଜିନିଷ ବା ବ୍ୟକ୍ତି ଏହି ଲୋକକୁ ଆସି ପାରିବ ନାହିଁ । ଏହା ବିଶେଷ ସୁରକ୍ଷିତ ସ୍ଥଳ ଯେଉଁଠିକୁ ପାପର ପ୍ରବେଶାଧିକାର ନାହିଁ । ଏହା ମଣିଷର ସୁଖରେ ବିଶ୍ରାମ କରିବା ସ୍ଥାନ । ଏଠାରେ ସେ ଶାନ୍ତିରେ ପାର୍ଥିବ ଜୀବନର ସୁକର୍ମ ଜନିତ ଫଳ ଭୋଗ କରେ ।

ସମଗ୍ର ମାନସ ଜଗତ ସମ୍ବନ୍ଧରେ ସଠିକ ଧାରଣା ଆଣିବାକୁ ହେଲେ ମୂଳରୁ କେତୋଟି କଥା ବୁଝିବା ଦରକାର ହେଉଛି । ଅନ୍ୟ ଲୋକଗୁଡ଼ିକ ପରି ମାନସ ଲୋକରେ ସାତଗୋଟି ବିଭାଗ ଅଛି । କିନ୍ତୁ ଏହି ବିଭାଗ ଗୁଡ଼ିକ ଦୁଇଟି ମଣ୍ଡଳ ଅନ୍ତର୍ଭୁକ୍ତ । ଗୋଟିଏ ମଣ୍ଡଳ ତିନି ଗୋଟି ବିଭାଗକୁ ଘେନି ଓ ଅନ୍ୟଟି ଚାରି ଗୋଟି ବିଭାଗକୁ ଘେନି ଗଠିତ । ଅତ୍ୟଧିକ ସୂକ୍ଷ୍ମତା ହେତୁ ଉପରର ତ୍ରୈକ ମଣ୍ଡଳକୁ ଅରୂପ ବା ଅଶରୀରର ମଣ୍ଡଳ ଏବଂ ନିମ୍ନତର ଚତୁଷ୍କକୁ ରୂପ ବା ଶରୀରଯୁକ୍ତ ମଣ୍ଡଳ କହନ୍ତି । ମଣିଷ ଚେତନାର ବ୍ୟବହାର ପାଇଁ ଏ ଦୁଇ ଲୋକ ପାଇଁ ଦୁଇଟି ବାହନ ଅଛି ଯାହା ସାହାଯ୍ୟରେ ସେ କାର୍ଯ୍ୟ କରିପାରେ । ଫଳତଃ ଦୁଇଟି ଯାକ ବାହନ ବା ମଣ୍ଡଳ ପାଇଁ ମାନସ ଶବ୍ଦ ପ୍ରଯୁଜ୍ୟ ଯଥା ମାନସ ଶରୀର ଓ ମାନସ ଲୋକ । କିନ୍ତୁ ବର୍ତ୍ତମାନ ପାଇଁ କେବଳ ନିମ୍ନ ମଣ୍ଡଳ, ଯାହା ବିଷୟରେ ଆମେ ପ୍ରଥମେ ଆଲୋଚନା କରିବା, ତାକୁ ଏହି ନାମରେ ଅଭିହିତ କରାଯାଉଛି, କାରଣ ଉଚ୍ଚତର ମଣ୍ଡଳରେ କାର୍ଯ୍ୟ କରୁଥିବା ଶରୀର 'କାରଣ ଶରୀର' ନାମରେ ଅଭିହିତ । ତାକୁ ଏପ୍ରକାର ନାମ ଦିଆ ଯିବାର କାରଣ ପରେ ବୁଝି ପାରିବା । ଶିକ୍ଷାର୍ଥୀମାନେ 'ଉଚ୍ଚତର ମନ' ଓ 'ନିମ୍ନତର ମନ' ଭିତରେ ଥିବା ପାର୍ଥକ୍ୟ ଉତ୍ତମ ରୂପେ ମନେ ରଖିବେ । କାରଣ-ଶରୀର ମଣିଷର ଉଚ୍ଚତର ମାନସ ଲୋକର ବାହନ ତଥା ଜୀବାତ୍ମାର ଦେହ ବା ମନୁଷ୍ୟର ଚିରସ୍ଥାୟୀ ଶରୀର । ଏଥିରେ ଜନ୍ମ ଜନ୍ମାନ୍ତର ଧରି ତାହାର ଅସ୍ତିତ୍ୱ ରହିଥାଏ । କିନ୍ତୁ ମାନସ ଶରୀର ନିମ୍ନତର ମନର ବାହନ । ତାହା ମୃତ୍ୟୁ

ପରେ ରହେ ଓ ଦେବଚନ ବା ସ୍ୱର୍ଗଲୋକକୁ ଯାଏ । ଏହିରୂପ ମଣ୍ଡଳରେ ଦେବଚନ ଶେଷ ବେଳକୁ ମିଳାଇଯାଏ ।

(କ) ମାନସ ଶରୀର - ଚେତନାର ମାନସ ଶରୀର ରୂପୀ ବାହନଟି ଦେବଲୋକର ତଳ ଚାରି ବିଭାଗର ପଦାର୍ଥରେ ଗଠିତ ଏବଂ ସେହି ସ୍ତରମାନଙ୍କରେ ବିହାରକରେ । ଏହା ଯଦିଓ ମାନସଲୋକରେ ଚେତନାର ବାହନ ହେବା ପାଇଁ ଉଦ୍ଦିଷ୍ଟ, ତଥାପି କାମନା ଶରୀର ଓ ପାର୍ଥିବ ଶରୀର ଭିତର ଦେଇ କାର୍ଯ୍ୟ କରିପାରେ । ଏହାକୁ ଆମେ ସଂସାରରେ ଜାଗ୍ରତ ଚେତନାରେ ମନର କାର୍ଯ୍ୟ ବୋଲି କହିଥାଉଁ । ବାସ୍ତବିକ ଜଣେ ଅନୁନ୍ନତ ବ୍ୟକ୍ତିର ମାନସ ଶରୀର ତାର ପାର୍ଥିବ ଜୀବନରେ ଚେତନାର ଗୋଟିଏ ସ୍ୱତନ୍ତ୍ର ବାହନ ରୂପେ ସ୍ୱାଧୀନ ଭାବରେ କାର୍ଯ୍ୟ କରିପାରେ ନାହିଁ । ଏଭଳି ବ୍ୟକ୍ତି ଯେତେବେଳେ ତାର ମାନସିକ ଶକ୍ତିଗୁଡ଼ିକୁ ବ୍ୟବହାର କରିବାକୁ ଚେଷ୍ଟା କରେ ସେତେବେଳେ ସେଗୁଡ଼ିକୁ ପାର୍ଥିବ ଓ କାମ ପଦାର୍ଥମାନଙ୍କ ଦ୍ୱାରା ଆବୃତ କରିବା ଦରକାର ହୁଏ । ତା ନ ହେଲେ ସେଗୁଡ଼ିକର କାର୍ଯ୍ୟ ବିଷୟରେ ସେ ସଚେତନ ହୋଇପାରେ ନାହିଁ । ମାନସ ଶରୀର ଚିନ୍ତାକାରୀ ଜୀବାତ୍ମାର ସମସ୍ତ ବିଚାର ଶକ୍ତିର ବାହନ ଅଟେ । କିନ୍ତୁ ପ୍ରାଥମିକ ଅବସ୍ଥାରେ ଏହା ଅତି କ୍ଷୀଣ ଭାବରେ ଗଠିତ ହୋଇଥାଏ । ଅନୁନ୍ନତ ଲୋକର କାମ ଶରୀର ପରି ଏକ ପ୍ରକାର ବିଶୃଙ୍ଖଳ ନିରାଶାବ୍ୟଞ୍ଜନ ଅବସ୍ଥାରେ ଥାଏ ।

ମାନସ ଶରୀର ଯେଉଁ ପଦାର୍ଥରେ ତିଆରି ତାହା ଅତ୍ୟନ୍ତ ହାଲୁକା ଓ ସୂକ୍ଷ୍ମ (subtle) । ଆମେ ଜାଣି ସାରିଛନ୍ତି ଯେ କାମ ପଦାର୍ଥ ଇଥରଠାରୁ ଆହୁରି ସୂକ୍ଷ୍ମ । ବର୍ତ୍ତମାନ ଆମକୁ ପଦାର୍ଥ ସମ୍ବନ୍ଧୀୟ ଧାରଣାକୁ ସୂକ୍ଷ୍ମତା ଦିଗରେ ଆହୁରି ପ୍ରସାରିତ କରିବାକୁ ହେବ ଯାହା କି ପାର୍ଥିବ ତଥା କାମଲୌକିକ ଅତୀନ୍ଦ୍ରିୟ ଦୃଷ୍ଟିର ବାହାରେ । ଏହା ଏପରି ସୂକ୍ଷ୍ମ ଯେ ମନୁଷ୍ୟର ଅନ୍ତରିନ୍ଦ୍ରିୟରେ ମଧ୍ୟ ଅନୁଭବ କରିହୁଏ ନାହିଁ । ଏହି ପଦାର୍ଥ ଆମ ବିଶ୍ୱର ବିଭାଗ ଭାବରେ ଗଣନା କଲେ, ଉଚ୍ଚତର ଲୋକରୁ ନିମ୍ନ ଦିଗକୁ ଗଣିଲେ ପଞ୍ଚମ ସ୍ତର ଓ ନିମ୍ନତମ ଦିଗରୁ ଉପର ଦିଗରେ ଗଣିଲେ ତୃତୀୟ ସ୍ତର ଭାବରେ ବିଦ୍ୟମାନ । ଏହି ସ୍ତରରେ ଜୀବାତ୍ମା 'ମନ' ଭାବରେ ପ୍ରକାଶିତ ହୋଇଥାଏ, ଯେପରି

ଏହାର ନିମ୍ନ ସ୍ତର ଅର୍ଥାତ୍ କାମ ଲୋକରେ ''ସମ୍ବେଦନ'' (sensation) ଓ 'ଅନୁଭୂତି' ଭାବରେ ନିଜକୁ ପ୍ରକାଶ କରିଥାଏ । ମାନସ ଶରୀରର ଗୋଟିଏ ବିଶେଷତ୍ୱ ଅଛି ଯାହାକି ମନୁଷ୍ୟର ଆଭା ଭିତରେ ପ୍ରକାଶ ପାଉଥିବା ଏହାର ବାହାର ଭାଗରୁ ଜଣାଯାଏ ।ଏହା ଜନ୍ମ ଜନ୍ମାନ୍ତର ଭିତର ଦେଇ ପ୍ରକୃତ ମଣିଷର ପୁଷ୍ଟି ସାଧନ ଓ କ୍ରମ ବିକାଶ ସଙ୍ଗେ ସଙ୍ଗେ ପୁଷ୍ଟ ହୁଏ ଏବଂ ଆକାର ତଥା କାର୍ଯ୍ୟକ୍ଷମତାରେ ବୃଦ୍ଧି ଘଟାଇଥାଏ । ଏପରି ବୈଶିଷ୍ଟ୍ୟ ସହିତ ଆମେ ଏପର୍ଯ୍ୟନ୍ତ ପରିଚିତ ହୋଇ ନାହୁଁ । ଜାତି ଓ ସ୍ତ୍ରୀ ପୁରୁଷ ଭେଦ ଅନୁସାରେ କେତେକ ପାର୍ଥକ୍ୟ ଘେନି ପାର୍ଥିବ ଶରୀର ଜନ୍ମ ଜନ୍ମାନ୍ତର ଧରି ଗଠିତ ହୋଇଛି, ଯଦିଓ ଆଟଲାଣ୍ଟିଆନମାନଙ୍କ ଯୁଗରୁ ଆକାରରେ ସମାନ ଅଛି ବୋଲି ମନେ ହୁଏ । କାମନା ଶରୀର ପକ୍ଷରେ ଲକ୍ଷ୍ୟିତ ହୁଏ ଯେ ମନୁଷ୍ୟର ଉନ୍ନତି ସାଙ୍ଗରେ ତାହାର ଗଠନରେ ଉନ୍ନତି ଘଟେ । କିନ୍ତୁ ମଣିଷର କ୍ରମ ବିକାଶ ସାଙ୍ଗରେ କେବଳ ତା ମାନସ ଶରୀରର ଆକାରରେ ବୃଦ୍ଧି ଘଟେ । ଆମେ ଜଣେ ଅନୁନ୍ନତ ଲୋକକୁ ଲକ୍ଷ୍ୟ କଲେ ଦେଖିବା ତାର ମାନସ ଶରୀର ପୃଥକ ଭାବେ ଆଦୌ ଦେଖା ଯିବ ନାହିଁ । ଏହା ଏତେ କମ ପ୍ରକାଶିତ ଯେ ତାକୁ ଦେଖିବାକୁ ବିଶେଷ ଯତ୍ନ କରିବା ଦରକାର ହୁଏ । ଜଣେ ଉନ୍ନତ ଲୋକ ଯାହାଙ୍କର ଆଧ୍ୟାତ୍ମିକ ଭାବ ନାହିଁ କିନ୍ତୁ ମାନସିକ ବୃତ୍ତି ଗୁଡ଼ିକୁ ଓ ଧୀ ଶକ୍ତିକୁ ବିକଶିତ ଓ ନିୟନ୍ତ୍ରିତ କରି ପାରିଛନ୍ତି ତାଙ୍କର ମାନସ ଶରୀର ଗୋଟିଏ ନିର୍ଦ୍ଦିଷ୍ଟ ଧାରାରେ ଉନ୍ନତି କରିଥାଏ । ଏହାର ଗଠନ ପରିପାଟିରୁ ଗୋଟିଏ ସକ୍ରିୟ ବାହନ ବୋଲି ଜାଣିହୁଏ । ଏହା ଅତି ସ୍ପଷ୍ଟ ଓ ନିର୍ଦ୍ଦିଷ୍ଟ ଆକାର ଯୁକ୍ତ ଏବଂ ଏହାର ଉପାଦାନ ସୂକ୍ଷ୍ମ ଓ ସୁନ୍ଦର ରଙ୍ଗ ଯୁକ୍ତ ହୋଇଥାଏ । ଅନବରତ କର୍ମ ଚଞ୍ଚଳ ଥିବାରୁ ସ୍ପନ୍ଦନ ଯୁକ୍ତ ଏବଂ ଉତ୍ସାହ ଓ ପ୍ରାଣ ଶକ୍ତିରେ ପରିପୂର୍ଣ୍ଣ ଥାଏ । ମନୋମୟ ଜଗତରେ ଏହା ତାର ଜୀବନ୍ତ ବିକାଶ ।

ଏହାର ପ୍ରକୃତି, କ୍ରିୟା ଓ ପରିପୁଷ୍ଟି ବିଷୟରେ କୁହାଯାଇପାରେ ଯେ ଏହା ଅତି ସୂକ୍ଷ୍ମ ପଦାର୍ଥଦ୍ୱାରା ଗଠିତ । ଜୀବାତ୍ମା ଧୀଶକ୍ତି (Intellect) ରୂପେ ଏଥିରେ ପ୍ରକାଶମାନ । ଧୀଶକ୍ତିର ବିକାଶ ଅନୁପାତରେ ଏହା ଜନ୍ମ ଜନ୍ମାନ୍ତର ଧରି ପରିପୁଷ୍ଟ ହୋଇଥାଏ । ତାର ବୈଶିଷ୍ଟ୍ୟ ଓ ଗୁଣ ଯେତିକି ସୁସ୍ପଷ୍ଟ ହୁଏ

ଏହା ସେତିକି ସୁଗଠିତ ହୁଏ । ଏହା ପାର୍ଥିବ ଓ କାମନା ଶରୀରମାନଙ୍କ ସାହାଯ୍ୟରେ କାମକଲା ବେଳେ କାମନା ଶରୀର ପରି ମଣିଷ ଆକୃତି ଧରେ ନାହିଁ । ଏହାର ସୀମା ରେଖା ବୃତ୍ତାଭାସ ବା ଡିମ୍ବାକାର । କାମନା ଓ ପାର୍ଥିବ ଶରୀରମାନଙ୍କୁ ଓତପ୍ରୋତ ଭାବରେ ଭେଦ କରି ତଥା ଜ୍ୟୋତିବନ୍ତ ମଣ୍ଡଳାକାରରେ ଆବୃତ କରି ରହିଥାଏ । ଧୀଶକ୍ତି ବୃଦ୍ଧି ସଙ୍ଗେ ସଙ୍ଗେ ଏହି ଜ୍ୟୋତି ମଣ୍ଡଳ ବର୍ଦ୍ଧିତ ହୁଏ । କହିବା ବାହୁଲ୍ୟ ଯେ ମନର ଉଚ୍ଚତର ଶକ୍ତିଗୁଡ଼ିକ ବିକଶିତ ହେଲେ ଏହି ଡିମ୍ବାକୃତି ଶରୀର ଅତି ମନୋରମ ଓ ମହନୀୟ ହୋଇ ଉଠେ । ଏହାକୁ କାମଲୌକିକ ଅତୀନ୍ଦ୍ରିୟ ଦୃଷ୍ଟିରେ ଦେଖି ହୁଏ ନାହିଁ; କିନ୍ତୁ ମାନସ ରାଜ୍ୟର ସୂକ୍ଷ୍ମତର ଅତୀନ୍ଦ୍ରିୟ ଦୃଷ୍ଟିରେ ସ୍ପଷ୍ଟ ଦେଖାଯାଏ । ଯେପରି ଜଣେ ଲୋକର ପାର୍ଥିବ ଜଗତରେ ଦୃଷ୍ଟି ଶକ୍ତିଥାଇ ସୁଦ୍ଧା କାମଲୋକରେ କ୍ରିୟାଶୀଳ ଅତୀନ୍ଦ୍ରିୟ ଦୃଷ୍ଟି ବିକଶିତ ନ ହୋଇଥିଲେ ତା ଚାରିପଟରେ ଘେରିରହିଥିବା କାମଲୋକର ପଦାର୍ଥମାନଙ୍କୁ ସେ ଦେଖିପାରେ ନାହିଁ; ସେହିପରି ମାନସ ଲୋକ ଯଦିଓ ଆମକୁ ଚାରି ଦିଗରେ ଘେରି ରହିଛି, ମାନସିକ ଇନ୍ଦ୍ରିୟଗୁଡ଼ିକ ଉନ୍ମିଳିତ ନ ହେଲା ପର୍ଯ୍ୟନ୍ତ ପାର୍ଥିବ ବା କାମଲୋକ ଦୃଷ୍ଟିରେ ମାନସ ଲୋକ ପଦାର୍ଥରେ ଗଠିତ ରୂପଗୁଡ଼ିକୁ ଆମେ ଦେଖି ପାରିବା ନାହିଁ ।

ଇହ ଜଗତରେ ଆମେ ଯେଉଁ ଇନ୍ଦ୍ରିୟଗୁଡ଼ିକ ସହିତ ପରିଚିତ ତାହାଠାରୁ ମାନସ ଜଗତର ସୂକ୍ଷ୍ମ ଅନୁଭୂତି ଗ୍ରହଣ କ୍ଷମ ଇନ୍ଦ୍ରିୟଗୁଡ଼ିକ ବହୁତ ଅଲଗା । ପ୍ରକୃତରେ ଏଗୁଡ଼ିକ ଇନ୍ଦ୍ରିୟ ପଦବାଚ୍ୟ ନୁହେଁ, ବରଂ ମାନସିକ ଅନୁଭୂତି କହିବା ଉଚିତ ହେବ । ମନ ତା ଜଗତରେ ପ୍ରତ୍ୟେକ ବସ୍ତୁର ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସେ ସତେ ଯେପରି ତା ଉପରେ ବ୍ୟାପି ରହିଛି । ଦର୍ଶନ, ଶ୍ରବଣ, ସ୍ପର୍ଶାନୁଭବ, ସ୍ୱାଦ ଓ ଘ୍ରାଣ ଗ୍ରହଣ ପାଇଁ ଏଥିରେ ନିର୍ଦ୍ଦିଷ୍ଟ ଭାବରେ ପୃଥକ ଅଙ୍ଗ ନାହିଁ । ବିଭିନ୍ନ ଇନ୍ଦ୍ରିୟମାନଙ୍କ ଜରିଆରେ ଆମେ ଏଠାରେ ଯେଉଁ ସ୍ପନ୍ଦନମାନ ଭିନ୍ନ ଭିନ୍ନ ଭାବରେ ଲାଭ କରୁଛୁଁ ସେସବୁ ମନକୁ ସ୍ପର୍ଶ କରିବା ବେଳକୁ ସମସ୍ତ ବୈଶିଷ୍ଟ୍ୟ ଏକ ସଙ୍ଗରେ ଉପସ୍ଥିତ ହୁଅନ୍ତି । ମାନସ ଶରୀର ସେସବୁକୁ ଏକା ବେଳକେ ଗ୍ରହଣ କରେ, ସତେ ଯେପରି, ଯାହା କିଛି ମାନସ

ଶରୀର ଉପରେ ପ୍ରଭାବ ପକାଇବା ଭଳି ଜିନିଷ ଅଛି ସେ ସମସ୍ତ ବିଷୟକୁ ସେ ଏକ ସଙ୍ଗରେ ଗ୍ରହଣ କରି ନେଇଛି ।

ଏହି ମାନସିକ ଅନୁଭୂତି କିଭଳି ଭାବରେ ସମ୍ମିଳିତ ଭାବକୁ ଅଭ୍ରାନ୍ତ ଭାବରେ ଗ୍ରହଣ କରେ ତାହା ଭାଷାରେ ବୁଝାଇ ଦେବା ସହଜ ନୁହେଁ । ସହଜରେ ବୁଝିବା ପାଇଁ ବୋଧହୁଏ ତାକୁ ଏପରି କୁହାଯାଇପାରେ ଯେ ଯଦି ଜଣେ ତାଲିମପ୍ରାପ୍ତ ଶିକ୍ଷାର୍ଥୀ ମାନସ ଲୋକକୁ ଚାଲି ଯାଇ ଅନ୍ୟ ଏକ ଶିକ୍ଷାର୍ଥୀ ସହିତ ଭାବର ଆଦାନ ପ୍ରଦାନ କରିବାକୁ ଚାହେଁ ତେବେ ଆମେ ଇହ ଲୋକରେ ଭାବର ପ୍ରତୀକ ରୂପେ ଯେଉଁ ଶବ୍ଦ ବ୍ୟବହାର କରୁଛୁଁ ତା ପରିବର୍ତ୍ତେ ସେହି ବକ୍ତାମନରେ ଥିବା ଭାବ ଏକ ସଙ୍ଗରେ ରଙ୍ଗ ଶବ୍ଦ ରୂପ ସାହାଯ୍ୟରେ ବ୍ୟକ୍ତ କରିବ । ତଦ୍ୱାରା ସମ୍ପୂର୍ଣ୍ଣ ଭାବ ଗୋଟିଏ ସଙ୍ଗୀତ ମୟ ଚିତ୍ର ରୂପେ ପରିବେଶିତ ହୋଇଥାଏ । ଅନେକ ପାଠକ ଶୁଣିଥିବେ ଅତି ପୁରାତନ ପୁସ୍ତକରେ ମହାପୁରୁଷମାନେ ଦେବତାମାନଙ୍କ ଭାଷା ରଙ୍ଗ ବର୍ଣ୍ଣରେ ଲେଖିଥିଲେ । ସେ ଭାଷା ଏବେ ମଧ୍ୟ ଅନେକ ଶିଷ୍ୟଙ୍କୁ ଜଣା ଅଛି ଓ ବ୍ୟବହୃତ ହେଉଛି । ଏହାର ରଙ୍ଗ ଓ ଆକାର ମାନସ ଲୋକରୁ ଗୃହୀତ ହୋଇଥାଏ । ଏତଦ୍ୱାରା ପ୍ରତିଟି ସ୍ପନ୍ଦନ ରୂପ ରଙ୍ଗ ଓ ଶବ୍ଦ ସୃଷ୍ଟି କରିଥାଏ । ମନ ରଙ୍ଗ, ରୂପ କିମ୍ୱା ଶବ୍ଦ କୌଣସି ଗୋଟିକୁ ଭାବେ ନାହିଁ । ଏହା ଗୋଟିଏ ଭାବନାକୁ ଭାବିଥାଏ ଯାହା କି ସୂକ୍ଷ୍ମ ମାନସ ପଦାର୍ଥ ଉପରେ ଗୋଟିଏ ଜଟିଳ ସ୍ପନ୍ଦନ ସୃଷ୍ଟି କରେ ଏବଂ ସୃଷ୍ଟିହୋଇଥିବା ସ୍ପନ୍ଦନଦ୍ୱାରା ସେ ଭାବନା ଯେପରି ସେପରି ପ୍ରକାଶିତ ହୁଏ । ମାନସ ଜଗତର ବସ୍ତୁ ସମୂହ ସତତ ସ୍ପନ୍ଦିତ ହେଉଛି ଏବଂ ସେଥିରୁ ଏପରି ରଙ୍ଗ, ଶବ୍ଦ ଓ ରୂପ ସବୁ ସୃଷ୍ଟି ହେଉଛି । କାମଲୌକିକ ଓ ପାର୍ଥିବ ଶରୀରରୁ ବିଚ୍ଛିନ୍ନ ହୋଇ କେହି ଯଦି ମାନସ ଶରୀରରେ କାମ କରିପାରେ, ସେ ଦେଖିବ ଯେ ଇହ ଲୋକରେ ଇନ୍ଦ୍ରିୟମାନଙ୍କର ସୀମିତ ଅବସ୍ଥାରୁ ସେ ସମ୍ପୂର୍ଣ୍ଣ ମୁକ୍ତ ହୋଇଛି । ନିମ୍ନ ଜଗତରେ ଯେଉଁ ସବୁ ସ୍ପନ୍ଦନ ପରସ୍ପରଠାରୁ ଭିନ୍ନ ଭାବରେ ପ୍ରକାଶିତ ହୁଅନ୍ତି ସେଗୁଡ଼ିକୁ ସେ ଏକତ୍ର ଗ୍ରହଣ କରିପାରୁଛି ।

କେହି ଲୋକ ଯେତେବେଳେ ସଚେତନ ଅବସ୍ଥାରେ ଚିନ୍ତାକରେ ଓ ପାର୍ଥିବ ତଥା କାମନା ଶରୀର ସାହାଯ୍ୟରେ କାର୍ଯ୍ୟ କରେ, ସେତେବେଳେ

ସେ ଚିନ୍ତା ମାନସ ଶରୀରରେ ଉତ୍ପନ୍ନ ହୋଇ ପ୍ରଥମେ କାମନା ଶରୀର ଓ ତତ୍‌ପରେ ପାର୍ଥିବ ଶରୀରକୁ ଯାଏ । ଯେତେବେଳେ ଆମେ ଚିନ୍ତା କରୁଁ ତାହା ଆମେ ମାନସ ଶରୀର ସାହାଯ୍ୟରେ କରିଥାଉଁ । ମନହିଁ ଭାବନାର ମାଧ୍ୟମ ଏବଂ ଏହାହିଁ ସେହି ଚେତନା ଯାହା ଅହଂ ବା 'ମୁଁ' ଭାବେ ପ୍ରକାଶିତ ହୋଇଥାଏ । ଯଦିଓ ଏହି ଅହଂ ଭ୍ରାନ୍ତିମୂଳକ ତଥାପି ଏହାହିଁ ଏକମାତ୍ର ଅହଂ ଯାହା ଅଧିକାଂଶ ଲୋକଙ୍କ ପାଖରେ ପରିଚିତ । ପାର୍ଥିବ ଶରୀରର ଚେତନା ବିଷୟରେ ଆଲୋଚନା କଲାବେଳେ ଆମେ ଜାଣିବାକୁ ପାଇଛନ୍ତି, ପାର୍ଥିବ ଶରୀରରେ ଘଟୁଥିବା ସବୁ କିଛି ବିଷୟ ସେ ଜାଣି ପାରେ ନାହିଁ । ତାର କାର୍ଯ୍ୟର ଗୋଟିଏ ଅଂଶ ସ୍ୱୟଂକ୍ରିୟ ଭାବରେ ଚାଲିଥାଏ । ଛୋଟ ଛୋଟ କୋଷଗୁଡ଼ିକ ଯେପରି ସ୍ୱତନ୍ତ୍ର ଭାବରେ ଚିନ୍ତା କରନ୍ତି ମଣିଷ ସେପରି ଚିନ୍ତା କରି ପାରେ ନାହିଁ । ବାସ୍ତବରେ ଦେଖିଲେ ସମଗ୍ର ଶରୀରର ଚେତନାରେ ସେ ଅଂଶୀଦାର ହୋଇ ପାରେ ନାହିଁ । ଯେତେବେଳେ ମଣିଷ ମାନସ ଶରୀରକୁ ଆସେ ସେତେବେଳେ ସେ ତା ସହିତ ଏପରି ଘନିଷ୍ଠ ଅଞ୍ଚଳକୁ ଆସିଯାଏ ଯେ ନିଜକୁ ତା ସହିତ ଅଭିନ୍ନ ବୋଲି ମନେକରେ । ''ମୁଁ ଭାବୁଛି'' ''ମୁଁ ଜାଣେ'' ଏସବୁକୁ ବିଶ୍ଳେଷଣ କଲେ ଜଣାଯାଏ, ମାନସ ଶରୀରରେ ମନ ହେଉଛି ଆତ୍ମା ଏବଂ ଆମପରି ଅନେକଙ୍କ ପକ୍ଷରେ ଏହା ଆତ୍ମାନୁସନ୍ଧାନର ଶେଷ ସୀମା ପରି ଜଣାଯାଏ । କେବଳ ଜାଗ୍ରତ ଚେତନାକୁ ବିଚାରକୁ ନେଲେ ଏହା ଅବଶ୍ୟ ଠିକ୍ । ଯେଉଁ ଲୋକ ବୁଝି ପାରନ୍ତି ଯେ କାମନା ଶରୀରର ଅନୁଭୂତି ପରି ଜାଗ୍ରତ ଚେତନା ମଧ୍ୟ ଆମର ଆତ୍ମାନୁସନ୍ଧାନ ଯାତ୍ରା ପଥରେ ଗୋଟିଏ ଅବସ୍ଥା ଏବଂ ଯେ ଏହାକୁ ଅତିକ୍ରମ କରି ଶିଖିଛନ୍ତି, ସେ ଜାଣି ପାରିବେ ଯେ ଏହା ମଧ୍ୟ ପ୍ରକୃତ ମଣିଷର ଯନ୍ତ୍ର ମାତ୍ର । ଆମ ଭିତରୁ ଅନେକ ଲୋକ ମୁଁ କହିଲା ପରି ନିଜକୁ ମାନସ ଶରୀରଠାରୁ ପୃଥକ କରି ଦେଖନ୍ତି ନାହିଁ ବା ପୃଥକ ବୋଲି ଭାବି ପାରନ୍ତି ନାହିଁ । ସେମାନଙ୍କ ପାଇଁ ତାଙ୍କର ମାନସ ଶରୀର ତାଙ୍କର ସର୍ବଶ୍ରେଷ୍ଠ ପ୍ରକାଶ, ଉଚ୍ଚତମ ବାହନ, ଉଚ୍ଚତମ ଆତ୍ମା, ଯାହାକୁ ସେମାନେ ସ୍ପର୍ଶ କରି ପାରିବେ ବା ଉପଲବ୍ଧି କରିପାରିବେ । ଏପରି ମନେ କରିବା ଅତି ସ୍ୱାଭାବିକ ଓ ଅବଶ୍ୟମ୍ଭାବୀ । କାରଣ, କ୍ରମ ବିକାଶର ଏହି ପର୍ଯ୍ୟାୟରେ ମନୁଷ୍ୟର ବ୍ୟକ୍ତିତ୍ୱ ମାନସ ଶରୀରକୁ ଉଜ୍ଜୀବିତ କରି ତହିଁରେ ଶ୍ରେଷ୍ଠ ସକ୍ରିୟତା

ଆଣିଛି । ସେ ଅତୀତରେ ପାର୍ଥିବ ଶରୀରକୁ ଚେତନାର ବାହନ ଭାବରେ ଉଜ୍ଜୀବିତ କରିଥିଲା ବୋଲି ବର୍ତ୍ତମାନ ସ୍ୱାଭାବିକ ଭାବରେ ବ୍ୟବହାର କରି ପାରୁଛି । ବର୍ତ୍ତମାନ ମାନବ ଜାତିର ଅନୁନ୍ନତ ବ୍ୟକ୍ତିମାନଙ୍କଠାରେ କାମନା ଶରୀରକୁ କାର୍ଯ୍ୟକ୍ଷମ ହେଉଥିବାର ଦେଖାଯାଏ । ଏହା ଅଧିକାଂଶ କ୍ଷେତ୍ରରେ ଆଂଶିକ ଭାବରେ ସଫଳ ହୋଇ ପାରିଛି । ଏହି ପଞ୍ଚମ ଜାତିରେ ମାନବ ସତ୍ତା ସଂସାରରେ ମାନସ ଶରୀରକୁ ସକ୍ରିୟ କରିବା ଚେଷ୍ଟାରେ ଅଛି । ଏହି ମାନସ ଶରୀରକୁ ଗଠନ କରି, ଏହାର କ୍ରମ ବିକାଶ ସାଧନ କରିବା କାର୍ଯ୍ୟରେ ବ୍ୟାପୃତ ହେବା ମନୁଷ୍ୟ ଜାତିର କର୍ତ୍ତବ୍ୟ ।

ତାହାହେଲେ ଆମର ବିଶେଷ ଭାବରେ ବୁଝିବା ଦରକାର ଏହି ମାନସ ଶରୀର କେଉଁଥିରେ ଗଢ଼ା ଓ ଏହାର ପରିପୁଷ୍ଟି କିପରି ହୁଏ । ଆମର ଚିନ୍ତା କରିବା ହେଉଛି ଅସଲ ପଦାର୍ଥ ଯେଉଁଥିରୁ ଏ ମନ ଗଢ଼ି ଉଠେ ଓ ତହିଁରେ ଏହାର ପୁଷ୍ଟି ସାଧିତ ହୁଏ । ଆମର ମନସିକ ବୃତ୍ତି ଗୁଡ଼ିକର ଅନୁଶୀଳନରେ, ଚାରୁକଳାରେ କୁଶଳତା ଅର୍ଜନ କରିବା ଦ୍ୱାରା, ଉଚ୍ଚ କୋଟିର ଆବେଗ (emotion) ର ପୁଷ୍ଟି ସାଧନ କରିବା ଦ୍ୱାରା ଆମେ ଜୀବନର ପ୍ରତିଟି ମୁହୂର୍ତ୍ତରେ, ଦିନ ପରେ ଦିନ, ମାସ ପରେ ମାସ ଓ ବର୍ଷ ପରେ ବର୍ଷ ଏହି ମାନସ ଶରୀରକୁ ଗଠନ କରିଥାଉଁ । ଯଦି କେହି ତାର ମାନସିକ ଦକ୍ଷତାକୁ ବ୍ୟବହାର ନ କରେ, ଚିନ୍ତା ଧାରାରେ ନିଜସ୍ୱ ବୋଲି କିଛି ନ ରହେ, କେବଳ ବାହାରୁ ଚିନ୍ତା ଗ୍ରହଣ କରୁଥାଏ ଓ ନିଜ ମନ ଭିତରେ ସୃଷ୍ଟି କରୁ ନଥାଏ ଏବଂ ଜୀବନ ଯାତ୍ରାରେ ଗତି କଲାବେଳେ ଅନ୍ୟ ଲୋକଙ୍କର ଭାବନା ସବୁ ତା ମନରେ ଭିଡ କରି ଥାଆନ୍ତି, ତେବେ ସେ କେବଳ ଗୋଟିଏ ଆଧାର ହୁଏ ସିନା ସ୍ରଷ୍ଟା ହୋଇପାରେନାହିଁ । ଫଳତଃ ଜୀବନ ପରେ ଜୀବନ ଏହିପରି କଟାଇ ଦେଲେ ମଧ୍ୟ ମାନସ ଶରୀର ବଢ଼ିପାରେ ନାହିଁ । ଗୋଟିଏ ଜୀବନ ଶେଷରେ ସେ ଯେପରି ଚାଲି ଯାଇଛି ସେହିପରି ସେ ପୁନରାୟ ଫେରି ଆସେ । ଜନ୍ମଜନ୍ମାନ୍ତରେ ଧରି ତାର ବ୍ୟକ୍ତି ସତ୍ତା ଏକାପରି ଅନୁନ୍ନତ ଅବସ୍ଥାରେ ରହିଥାଏ । କାରଣ, କେବଳ ମାତ୍ର ସୃଜନ ଶକ୍ତିକୁ ବ୍ୟବହାର କରି ମନର ବୃତ୍ତି ଗୁଡ଼ିକୁ ଗଠନମୂଳକ କାର୍ଯ୍ୟରେ ଅନବରତ ଖଟାଇଲେ ମାନସ ଶରୀରର ପୁଷ୍ଟି ସାଧିତ ହୋଇଥାଏ ଓ ମଣିଷର ବିକାଶରେ ଅଗ୍ରଗତି ଘଟିଥାଏ ।

ଏକଥା ଉପଲବ୍ଧି କରିବା ମୁହୂର୍ତ୍ତରେ ବୋଧହୁଏ ତୁମ ଦୈନନ୍ଦିନ ଜୀବନରେ ଚେତନା ସମ୍ବନ୍ଧୀୟ ଧାରଣା ବଦଳାଇ ଦେବାକୁ ଚେଷ୍ଟା କରିବ ଏବଂ ଏହାର କାର୍ଯ୍ୟ ପ୍ରତି ଦୃଷ୍ଟି ରଖିବ । ସେପରି କଲେ ଦେଖି ପାରିବ ଯେ ମୁଁ ଏବେ କହିଲା ପରି ତୁମ ଭାବନା ଗୁଡ଼ିକରୁ ଅଧିକାଂଶ ତୁମ ନିଜର ଭାବନା ନୁହେଁ, ପାୟତଃ ସେଗୁଡ଼ିକ ଅନ୍ୟ ଲୋକମାନଙ୍କ ଭାବନାରୁ ଗୃହୀତ ହୋଇଛି । ଏହି ଭାବନା ଗୁଡ଼ିକ କିପରି ଆସୁଛି ତାହା ତୁମକୁ ଜଣା ନାହିଁ, କେଉଁଠାରୁ ଆସୁଛି ତାହା ମଧ ଇଣା ନାହିଁ । ପୁଣି ଯେଉଁ ଭାବନା ଗୁଡ଼ିକ ଚାଲି ଯାଉଛି ତାହା କୁଆଡେ ଯାଉଛି ତାହା ମଧ ଜାଣି ହେଉ ନାହିଁ । ତୁମେ କିଛିଟା କ୍ଷୋଭ ଓ ନିରାଶା ସହ ଅନୁଭବ କରିବ ଯେ ତୁମର ମନ ବିକାଶ ଲାଭ କରିବା ପରିବର୍ତ୍ତେ କେବଳ ଭାବନା ଯିବା ଆସିବାର ଗୋଟିଏ ସ୍ଥଳ ହୋଇଛି । ତୁମେ ନିଜେ ଭାବି ଦେଖ ତୁମ ଭାବନାରୁ କେତେ ଭାଗ ତୁମ ନିଜର ଓ କେତେ ଭାଗ ବାହାରର । ଦିନ ଭିତରେ ଥରେ ଥରେ ଅଟକି ଯାଇ ଦେଖ ତୁମେ କେଉଁ ବିଷୟରେ ଚିନ୍ତା କରୁଛ । ଏହା ଅତି ସାଧାରଣ ଅଭିଜ୍ଞତାର କଥା । ଏପରି ସହସା ପରୀକ୍ଷା କଲେ ଦେଖିବ ତୁମେ ହୁଏତ କିଛି ଭାବୁ ନାହଁ ବା ତୁମେ କିଛି ଗୋଟିଏ କଥା ଏତେ ଅସ୍ପଷ୍ଟ ଭାବରେ ଭାବୁଛ ଯେ, ମନ ବୋଲି ଯାହାକୁ କହନ୍ତି, ତା ଉପରେ ତାର କିଛି ପ୍ରଭାବ ପଡୁ ନାହିଁ ।

ତୁମେ ଅନେକ ଥର ଏପରି ପରୀକ୍ଷା କରିବା ଫଳରେ ପୂର୍ବାପେକ୍ଷା ଅଧିକ ଆତ୍ମ ସଚେତନ ହୋଇ ଯିବ । ସେହି ଅବସ୍ଥାରେ ତୁମ ମନ ଭିତରେ ଆସୁଥିବା ଭାବନାଗୁଡ଼ିକୁ ଲକ୍ଷ୍ୟକର – ପ୍ରତ୍ୟେକ ଭାବନା ତୁମ ମନ ଭିତରକୁ ଆସିବା ବେଳକୁ କି ଅବସ୍ଥାରେ ଥିଲା ଏବଂ ଗଲା ବେଳକୁ କି ରକମ ପରିବର୍ତ୍ତନ ହୋଇଛି ଏବଂ ସେ ତୁମ ଭିତରେ ଥିବା ବେଳେ ତୁମେ ସେଥିରେ କ'ଣ ଯୋଗ କରିଛ । ଏହି ଉପାୟରେ ତୁମର ମନ ପ୍ରକୃତରେ କ୍ରିୟାଶୀଳ ହୋଇ ପାରିବ ଓ ତାର ରଚନାତ୍ମକ ଶକ୍ତିକୁ କାର୍ଯ୍ୟରେ ଲଗାଇ ପାରିବ । ତୁମେ ବିଜ୍ଞ ହୋଇଥିଲେ ନିମ୍ନୋକ୍ତ ଉପାୟରେ କିଛି ଗୋଟିଏ ପନ୍ଥା ଅନୁସରଣ କରିବ । ପ୍ରଥମେ କେଉଁ ପ୍ରକାର ଭାବନାକୁ ତୁମେ ମନରେ ସ୍ଥାନ ଦେବ ତାହା ବାଛି ଦିଅ । ଯେତେବେଳେ ତୁମ ମନ ଭିତରେ ସେ ପ୍ରକାରର ସଦ୍‌ଭାବନା ଉପସ୍ଥିତ ହେଉଛି, ସେତେବେଳେ ସେ ବିଷୟରେ ଟିକିଏ ଅଧିକ ସମୟ ଚିନ୍ତାକର,

ତାକୁ ପ୍ରତି ପୋଷଣ କର, ବଳବାନ କର ଏବଂ ପ୍ରଥମେ ଆସିବା ବେଳକୁ ଯେତିକି ଥିଲା ତାହାଠାରୁ ତାକୁ ଅଧିକ ବଳବାନ କରିବାକୁ ଚେଷ୍ଟା କର ଏବଂ ସେହି ଭାବନାକୁ କାମଲୋକକୁ ତୁମର ଏକ ହିତକାରୀ ପ୍ରତିନିଧି ହିସାବରେ ପଠାଇ ଦିଅ । ତୁମ ମନରେ ଯେତେବେଳେ ଗୋଟିଏ ଅସଦ୍‌ଭାବନା ଉପସ୍ଥିତ ହେଉଛି ଯଥା ସମ୍ଭବ ତତ୍ପରତାର ସହିତ ଦୂର କରିଦିଅ । ତୁମେ ଯଦି ମନରେ କେବଳ ଭଲ ଓ ଉପକାରୀ ଭାବନା ଗ୍ରହଣ କରିବ ଓ ଅସଦ୍‌ଭାବନାକୁ ସ୍ଥାନ ଦେବା ପାଇଁ ରାଜି ନ ହେବ, ତାର ଫଳ ସ୍ୱରୂପ ଦେଖିବ, ଅଧିକରୁ ଅଧିକ ସଦ୍‌ଭାବନା ତୁମ ମନ ଭିତରକୁ ପ୍ରବେଶ କରୁଛି ଏବଂ ଅସଦ୍‌ଭାବନା ପ୍ରବେଶ କରିବା କମି କମି ଯାଉଛି । ଉପକାରୀ ସଦ୍‌ଭାବନା ଦ୍ୱାରା ମନକୁ ପୂର୍ଣ୍ଣ କରି ରଖିଲେ ତାହା ଚୁମ୍ବକ ଭଳି ତୁମ ଚାରିପଟରେ ଥିବା ସମାନ ଧରଣର ସଦ୍‌ଭାବନାକୁ ଆକର୍ଷଣ କରିବ । ତୁମେ ଅସଦ୍‌ଭାବନାକୁ ସ୍ଥାନ ଦେବା ପାଇଁ ରାଜି ନଥିବା ହେତୁ ଯେଉଁ ଅସଦ୍‌ଭାବନା ଅକସ୍ମାତ୍ ଆସି ଯିବ ସେଗୁଡ଼ିକ ମନର ସ୍ୱୟଂକ୍ରିୟ ପ୍ରଭାବ ବଳରେ ଫେରି ଯିବ । ସ୍ୱଭାବିକ ଭାବରେ ମାନସ ଶରୀର କ୍ରମେ ତା ଚାରିପଟେ ଥିବା ବାୟୁ ମଣ୍ଡଳରୁ ସଦ୍‌ଭାବନାଗୁଡ଼ିକୁ ଆକର୍ଷଣ କରିବା ଓ ଖରାପ ଭାବନାଗୁଡ଼ିକୁ ବିତାଡ଼ିତ କରିବା ବୈଶିଷ୍ଟ୍ୟ ଅର୍ଜନ କରିବ । ତା' ପରେ ମନ କେବଳ ଭଲ ବସ୍ତୁରେ ହିଁ କାମ କରିବ ଏବଂ ସେଗୁଡ଼ିକୁ ଅଧିକ କ୍ରିୟାଶୀଳ କରିବ । ଏହିପରି ଭାବେ ଜୀବାତ୍ମା ଅନବରତ ମାନସ ଲୋକର ପଦାର୍ଥ ସଂଗ୍ରହ କରିବ ଯାହାକି ତାର ମାନସ ଶରୀର ଗଠନ କରିବ ଓ ବର୍ଷକୁ ବର୍ଷ ପୁଷ୍ଟି ଲାଭ କରିବାରେ ଲାଗିବ । ପରିଶେଷରେ ଯେତେବେଳେ କାମନା ଶରୀର ଓ ପାର୍ଥିବ ଶରୀରକୁ ତ୍ୟାଗ କରି ମାନସ ଲୋକକୁ ମଣିଷ ଚାଲିଯିବ, ସେତେବେଳେ ଏ ସମସ୍ତ ସଂଗୃହୀତ ମାନସ ଲୋକର ପଦାର୍ଥ ତା ସାଙ୍ଗରେ ନେଇ ଯିବ । ସେ ଚେତନାକୁ ମଧ୍ୟ ତା ସାଙ୍ଗରେ ତା ନିଜ ସ୍ତରକୁ ନେଇ ଯିବ ଏବଂ ତାର ସଂଗୃହୀତ ପଦାର୍ଥ ଗୁଡ଼ିକର ବିଭିନ୍ନ ଯୋଗ୍ୟତା ଓ ଶକ୍ତିର ପରିପ୍ରକାଶ କରିବା କାର୍ଯ୍ୟରେ ଦେବଚନ ବା ସ୍ୱର୍ଗଲୋକର ଜୀବନକୁ ବ୍ୟବହାର କରିବ ।

ଏହିପରି ଭାବରେ ଗଠିତ ହୋଇ ଥିବା ବୈଶିଷ୍ଟ୍ୟ ଗୁଡ଼ିକୁ ଦେବଚନ ରହଣି କାଳର ଶେଷରେ ପରବର୍ତ୍ତୀ ଜନ୍ମ ପାଇଁ ସାଙ୍ଗରେ ଘେନି ଯିବା ନିମନ୍ତେ

ମାନସ ଶରୀର ଚୀରସ୍ଥାୟୀ 'କାରଣ ଶରୀର'କୁ ଅର୍ପଣ କରିଥାଏ । ମଣିଷ ପୃଥିବୀକୁ ଫେରିବା ଅବସ୍ଥାରେ ଏହି ବୃତ୍ତିଗୁଡ଼ିକ ମାନସ ଲୋକର ରୂପମୟ ମଣ୍ଡଳରୁ ପଦାର୍ଥ ସଂଗ୍ରହ କରନ୍ତି ଏବଂ ଆସନ୍ତା ପାର୍ଥିବ ଜୀବନ ପାଇଁ ଆହୁରି ସୁବିନ୍ୟସ୍ତ ଓ ଅଧିକ ବିକଶିତ ମାନସ ଶରୀର ଗଠନ କରନ୍ତି । ଏହି ବୃତ୍ତି ଗୁଡ଼ିକ ପରେ କାମନା ଶରୀରରେ ଓ ପାର୍ଥିବ ଶରୀରରେ ଶିଶୁର ''ଜନ୍ମଗତ ସଂସ୍କାର'' ଭାବରେ ପ୍ରକାଶ ଲାଭ କରନ୍ତି । ଇହ ଜୀବନରେ ଆମେ ପୂର୍ବ କଳ୍ପିତ ଅନୁସାରେ ମାନସିକ ପଦାର୍ଥମାନ ସଂଗ୍ରହ କରୁଅଛୁଁ । ଦେବଚନ ସମୟରେ ସେଗୁଡ଼ିକୁ ପରିପାକ କରି ମାନସିକ ଚେଷ୍ଟାକୁ ସଂକଳ୍ପ (ଚିନ୍ତନ) ବୃତ୍ତିରେ ତଥା ମାନସିକ ଶକ୍ତି ଓ କାର୍ଯ୍ୟରେ ପରିଣତ କରି ପାରିବୁଁ । ଦେବଚନ ସମୟରେ ଏହି ମହାନ ପରିବର୍ତ୍ତନ ଘଟିଥାଏ । ଆମେ ଇହଲୋକରେ ଜୀବନ ଯାପନ କରିବା ରୀତି ଏହାକୁ ସୀମିତ କରିଥାଏ । ସେଥିପାଇଁ ସାଂସାରିକ ଜୀବନରେ ସତ୍‌ଚେଷ୍ଟା କରିବାରେ ହେଳା ନ କରିବା ଆମ ପାଇଁ ମଙ୍ଗଳକର । କାରଣ, ଭବିଷ୍ୟତ ଜୀବନର ମାନସିକ ଶରୀର ଏ ଜୀବନର ମାନସିକ ଶରୀର ସାହାଯ୍ୟରେ କରିଥିବା କର୍ମ ଉପରେ ନିର୍ଭର କରେ । ଏଥିରୁ ଜଣା ପଡୁଛି ମଣିଷ ତାର ମାନସିକ ଶରୀରକୁ ଏଠାରେ ଯେଉଁଭଳି ଭାବେ ବ୍ୟବହାର କରିବ ତାହା ତାର କ୍ରମ ବିକାଶ ନିମନ୍ତେ କିପରି ମୂଲ୍ୟବାନ । ଏହା ତାର ଦେବଚନ କାଳର କାର୍ଯ୍ୟକ୍ରମକୁ ନିୟନ୍ତ୍ରିତ ଓ ସୀମିତ କରେ ଏବଂ ଏପରି କରିବାଦ୍ୱାରା ସେ ପରବର୍ତ୍ତୀ ଜୀବନରେ ଯେଉଁ ମାନସିକ ଗୁଣ ଓ ଶକ୍ତି ଘେନି ପାର୍ଥିବ ଜଗତକୁ ପୁଣି ଆସିବ ତାହାକୁ ମଧ୍ୟ ନିୟନ୍ତ୍ରିତ ଓ ସୀମିତ କରିଦିଏ । ଆମେ ଗୋଟିଏ ଜନ୍ମକୁ ଅନ୍ୟ ଗୋଟିଏ ଜନ୍ମଠାରୁ ଅଲଗା କରି ପାରିବା ନାହିଁ । ଆମର ବୁଣିବା ଅନୁସାରେ କର୍ମ ଆମକୁ ଫସଲ ଦେଇଥାଏ । ଅଳ୍ପ ବା ବେଶି ଫସଲ ନିର୍ଭର କରେ ଚାଷୀର ବିହନ ବୁଣିବା ଓ ବେଉଷଣ ଉପରେ ।

ମାନସ ଶରୀର ଗଠନ ପାଇଁ ଯେଉଁ ପଦାର୍ଥ ବ୍ୟବହୃତ ହୁଏ ତାହା ପ୍ରତି ଯଦି ନଜର ଦିଆଯାଏ, ତେବେ ଉକ୍ତ ମାନସ ଶରୀରର ସ୍ୱୟଂଚାଳିତ କ୍ରିୟା ବିଷୟରେ ଉପରେ ଯାହା କୁହାଯାଇଛି ତାହା ସ୍ପଷ୍ଟତର ଭାବରେ ବୁଝା ପଡ଼ିବ । ଏହି ଶରୀର ତାର ଅନ୍ତରତମ ପ୍ରକୃତିରେ ଯେଉଁ ବିଶ୍ୱବ୍ୟାପୀ ମାନସ (Universal Kind) ସହିତ ସଂଶ୍ଲିଷ୍ଟ ଅଛି ତାହା ମାନସିକ ବସ୍ତୁର ଭଣ୍ଡାର ଓ

ତହିଁରୁ ଏହା ପଦାର୍ଥ ଗ୍ରହଣ କରିଥାଏ । ଏହି ପଦାର୍ଥଗୁଡ଼ିକ ସବୁ ପ୍ରକାର ସ୍ପନ୍ଦନ ସୃଷ୍ଟି କରନ୍ତି । କିନ୍ତୁ ସେ ପଦାର୍ଥଗୁଡ଼ିକର ଗଠନ ସଂଯୋଗ ଉପରେ ସ୍ପନ୍ଦନର ବୈଶିଷ୍ଟ୍ୟ ଓ ଶକ୍ତି ନିର୍ଭର କରେ । ମାନସିକ ଶରୀର ନିଜେ ନିଜେ ସେ ଭଣ୍ଡାରରୁ କେବଳ ସେହି ପଦାର୍ଥ ସଂଗ୍ରହ କରି ଆଣି ପାରିବ ଯାହାର ସଂଯୋଗଗୁଡ଼ିକ ଦେହରେ ଥିବା ଗଠନ ସଂଯୋଗ ସହିତ ମେଳ ଖାଉଥିବ । କାରଣ ପାର୍ଥିବ ଶରୀର ପରି ମାନସ ଶରୀରରେ ମଧ୍ୟ ପଦାର୍ଥ କଣିକା ଗୁଡ଼ିକର ଅନବରତ ପରିବର୍ତ୍ତନ ହେଉଛି । କେତେଗୁଡ଼ିଏ କଣିକା ମାନସ ଶରୀରକୁ ତ୍ୟାଗ କରିଗଲେ ଖାଲି ପଡ଼ି ଯିବା ସ୍ଥାନକୁ ଅନୁରୂପ କଣିକା ଆସି ପୂର୍ଣ୍ଣ କରି ଦିଅନ୍ତି । ଯଦି କେହି ତାର କୁପ୍ରବୃତ୍ତି ଥିବାର ଦେଖି ପାରି ତାକୁ ପରିବର୍ତ୍ତନ କରିବାକୁ ଚେଷ୍ଟା କରେ, ତେବେ ସେ ଏକ ନୂତନ ଧରଣର ସ୍ପନ୍ଦନ ସୃଷ୍ଟି କରେ । କିନ୍ତୁ ମାନସ ଶରୀର ପୁରୁଣା ଧରଣର ସ୍ପନ୍ଦନରେ ଅଭ୍ୟସ୍ତ ଥିବାରୁ ନୂତନ ସ୍ପନ୍ଦନର ବିରୋଧ କରେ ଏବଂ ଏହା ମନରେ ଦ୍ୱନ୍ଦ୍ୱ ଓ ଦୁଃଖର କାରଣ ହୋଇଥାଏ । କ୍ରମଶଃ ଯେତେବେଳେ ପୁରାତନ କଣିକାଗୁଡ଼ିକ ବର୍ଜିତ ହୁଏ, ନୂତନ ସ୍ପନ୍ଦନ ପ୍ରତି ସଂବେଦନଶୀଳ କଣିକାମାନ ଆକୃଷ୍ଟ ହୋଇ ତାହାର ସ୍ଥାନ ପୂରଣ କରନ୍ତି । ଏହିପରି ଭାବରେ ମାନସ ଶରୀର ତାର ପ୍ରକୃତିର ପରିବର୍ତ୍ତନ କରେ ଓ ତାର ଉପାଦାନରେ ପରିବର୍ତ୍ତନ ଘଟାଇବା ହେତୁ ନୂତନ ଅଭ୍ୟାସ ଆଉ କଷ୍ଟ ଦାୟକ ହୁଏ ନାହିଁ । ମନର ଗୁଣ ବଦଳି ଯାଇ ଅସତ୍ ପ୍ରବୃତ୍ତି ପ୍ରତି ବିରୋଧ ଭାବାପନ୍ନ ଓ ସତ୍ ପ୍ରବୃତ୍ତିପ୍ରତି ଆକର୍ଷଣକାରୀ ହୋଇଥାଏ । ପୁରାତନ ମାନସିକ ବ୍ୟବସ୍ଥା ଦେଖି ତା ବିରୁଦ୍ଧରେ ଲଢ଼ିବା ଯୋଗୁଁ ପ୍ରାରମ୍ଭିକ ଚେଷ୍ଟାରେ ବଡ଼ କଷ୍ଟ ହୁଏ । କିନ୍ତୁ ପରେ ମନର ପୁରାତନ ରୂପ ପରିବର୍ତ୍ତନ ସାଙ୍ଗରେ ସତ୍‌ଚିନ୍ତା ସହଜ ହୋଇଯାଏ । ପରିଶେଷରେ ଏହି ପ୍ରଚେଷ୍ଟା ସ୍ୱତଃପ୍ରବୃତ୍ତ ଓ ଆନନ୍ଦ ଦାୟକ ହୁଏ ।

ମାନସ ଶରୀରର ପୁଷ୍ଟି ସାଧନ ଅନ୍ୟ ଏକ ଉପାୟରେ ହୋଇପାରେ; ତାହା ହେଉଛି 'ମନସଂଯୋଗ ଅଭ୍ୟାସ' ଅର୍ଥାତ୍ ମନକୁ ଗୋଟିଏ ବିଷୟରେ ନିବଦ୍ଧ କରିବା ଏବଂ ତାକୁ ଇତସ୍ତତଃ ଘୁରି ବୁଲିବାକୁ ନ ଦେଇ ସେଥିରେ ସ୍ଥିର ରଖିବା । ଧୀର ସ୍ଥିର ଭାବରେ କୌଣସି ଗୋଟିଏ ବିଷୟ ଚିନ୍ତା କଲାପରେ ଅନ୍ୟ ଗୋଟିଏ ବିଷୟ ଚିନ୍ତା କରିବାକୁ ଯିବା ପ୍ରକୃତ ରୀତି । ହଠାତ୍ କୌଣସି

ଏକ ବିଷୟରୁ ବିଷୟାନ୍ତରକୁ ଯିବା ବା ନାନା ପ୍ରକାରର ଅକିଞ୍ଚିତ କର ଚିନ୍ତା କରି ମାନସିକ ଶକ୍ତି ଅପଚୟ କରିବା ବାଞ୍ଛନୀୟ ନୁହେଁ । ଗୋଟିଏ ବିଚାର ବୁଦ୍ଧି ସମ୍ମତ ଚିନ୍ତା ଧାରା ଅବଲମ୍ବନ କରିବା ଭଲ ଅଭ୍ୟାସ । ଏହାଦ୍ୱାରା ପୂର୍ବରୁ ଚାଲି ଥିବା ଚିନ୍ତାରୁ ନୂତନ ଚିନ୍ତା ସ୍ୱାଭାବିକ ଭାବରେ ଜାତ ହୁଏ ଏବଂ ଏହି ଭାବରେ କ୍ରମଶଃ ଆମର ଧୀଶକ୍ତି ବୃଦ୍ଧି ଲାଭ କରେ ଓ ଆମ ଚିନ୍ତା ଧାରା ଅନୁକ୍ରମିକ ବିଚାର ଯୁକ୍ତ ହୋଇଥାଏ । ଯେତେବେଳେ ଗୋଟିଏ ଚିନ୍ତା ପରେ ଅନ୍ୟ ଗୋଟିଏ ଚିନ୍ତା ସୁଶୃଙ୍ଖଳ ଭାବରେ ଆସିବାରେ ଲାଗେ ସେତେବେଳେ ଏହା ମନକୁ ମାନସ ଜଗତରେ ସକ୍ରିୟ ଅଂଶ ଗ୍ରହଣ କରିବାକୁ ଶକ୍ତିଶାଳୀ କରିଦେଇ ଥାଏ । ଏହିପରି ମନ ସଂଯୋଗ ଓ ପର୍ଯ୍ୟାୟ କ୍ରମ ବିଚାର ଚିନ୍ତା ଶକ୍ତିର ବିକାଶ ଭିତରେ ମାନସ ଶରୀର ସୁସ୍ପଷ୍ଟ ସୀମା ରେଖା ବିଶିଷ୍ଟ ନିର୍ଦ୍ଦିଷ୍ଟ ଆକାର ଯୁକ୍ତ କରିବା ସଙ୍ଗେ ସଙ୍ଗେ ଆମର କ୍ରମବିକାଶକୁ ଦ୍ରୁତ, ସୁଶୃଙ୍ଖଳ ଓ ସୁସନ୍ତୁଳିତ କରି ଆମ ଶ୍ରମର ବିପୁଳ ପ୍ରତିଦାନ ଦେଇଥାଏ ।



## କାରଣ ଶରୀର

ବର୍ତ୍ତମାନ ଚାଲ ଆମେ ଦ୍ୱିତୀୟ ମାନସ ଶରୀର ବିଷୟ ଆଲୋଚନା କରିବା । ଏହା ତା ନିଜର ବିଶିଷ୍ଟ ନାମ 'କାରଣ ଶରୀର' ନାମରେ ଜଣାଶୁଣା । ନାମଟି ଏପରି ହେବାର ତାତ୍ପର୍ଯ୍ୟ ହେଉଛି ନିମ୍ନତର ଲୋକରେ ଯାହା କିଛି 'ଫଳ' ରୂପେ ଆତ୍ମ ପ୍ରକାଶ କରେ ସେ ସମସ୍ତଙ୍କର 'କାରଣ' (ବୀଜ) ଏହି ଶରୀରରେ ନିବାସ କରି ଥାଆନ୍ତି । ଏହା ଉଚ୍ଚତର ମନର ଶରୀର, ବ୍ୟକ୍ତି ବା ପ୍ରକୃତ ମନୁଷ୍ୟର ସ୍ୱରୂପ (form aspect) । ଏହା ମନୁଷ୍ୟର ଆଧାର । ଗନ୍ତାଘର ଯେଉଁଥିରେ ସେ ତାର ସବୁଯାକ ମୂଲ୍ୟବାନ ବସ୍ତୁ ଚିର ଦିନ ପାଇଁ ସାଇତି ରଖେ ଏବଂ ଏହାର ଗଠନ ପାଇଁ ଗ୍ରହଣ

ଉପଯୋଗୀ ପଦାର୍ଥ ନିମ୍ନତର ପ୍ରକୃତି ଯେତିକି ଦିଏ ଏହା ସେତିକି ପୁଷ୍ଟି ଲାଭ କରିଥାଏ । ଯାହା କିଛି ଦୀର୍ଘସ୍ଥାୟୀ ତାହା ଏଥି ଭିତରେ ନିହିତ ରହେ ଏବଂ ପର ଜନ୍ମକୁ ନେଇ ଯିବା ପାଇଁ ପ୍ରତ୍ୟେକଟି ଗୁଣର ଅଙ୍କୁର ଏଥିରେ ରହିଥାଏ । ସେଥିପାଇଁ ନିମ୍ନତର ଅଭିବ୍ୟକ୍ତିଗୁଡ଼ିକ ଏହି କାରଣ ଶରୀରର ପୁଷ୍ଟି ଓ ବିକାଶ ଉପରେ ନିର୍ଭର କରେ, ଏହାର କେବେ ବିନାଶ ନାହିଁ ।

ପୂର୍ବରୁ କୁହାଯାଉଛି କାରଣ ଶରୀର ବ୍ୟକ୍ତି ବିଶେଷର ସ୍ୱରୂପ । ଏଠାରେ କେବଳ ବର୍ତ୍ତମାନର ମାନବ କଳ୍ପ ପାଇଁ କୁହାଯାଇପାରେ ଯେ ଏହି ସ୍ୱରୂପର ଅସ୍ତିତ୍ୱ ନ ଆସିବା ପର୍ଯ୍ୟନ୍ତ ମଣିଷ ସୃଷ୍ଟି ହୋଇପାରେ ନାହିଁ । ତା'ର ଆବାସ ପାଇଁ ସ୍ଥୂଳ ଓ ଇଥରୀୟ ଆଧାର ପ୍ରସ୍ତୁତ ହୋଇପାରେ, କାମଲୋକରୁ ଉତ୍ତେଜନା, ଆବେଗ ଓ କାମନା ବାସନା ସଂଗ୍ରହ କରି କାମନା ଶରୀରରେ କାମ ସ୍ୱଭାବ ଗଠିତ ହୋଇପାରେ; କିନ୍ତୁ ଯେତେକାଳ ପର୍ଯ୍ୟନ୍ତ ଭୂଲୋକ ଓ କାମଲୋକର କାର୍ଯ୍ୟଦ୍ୱାରା ମାନସ ଲୋକର ପଦାର୍ଥ ଗ୍ରହଣ କରି ନିମ୍ନତର ଶରୀରରେ ମନର ବିକାଶ ନ ହୋଇଛି, ସେ ପର୍ଯ୍ୟନ୍ତ ମଣିଷ ସେଥିରେ ରହିବ ନାହିଁ । ଯେତେବେଳେ ଆତ୍ମା ନିଜର ଶକ୍ତିରେ ନିଜର ବାସସ୍ଥାନ ପ୍ରସ୍ତୁତ କରୁଥାଏ, ମାନସ ଲୋକର ପଦାର୍ଥ ଧୀରେ ଧୀରେ ବିକାଶ ଲାଭ କରିବାକୁ ଆରମ୍ଭ କରେ, ସେତେବେଳ ଯେଉଁ ମହାଜାଗତିକ ଆତ୍ମାବୁଦ୍ଧି ମନୁଷ୍ୟର କ୍ରମ ବିକାଶକୁ ଚିର ଆଚ୍ଛାଦାନ କରି ରଖିଛନ୍ତି, ତହିଁରୁ ଏକ ବିନ୍ଦୁ ଅବନତ ହୋଇ ଆସି ବିକାଶୋନ୍ମୁଖ ମାନସ ପଦାର୍ଥ ସହିତ ମିଳିତ ହୋଇ ତାକୁ 'ଫଳପ୍ରସୂ' କରନ୍ତି ଏବଂ ଏହି ମିଳନ ଫଳରେ 'କାରଣ ଶରୀର' ବା 'ବ୍ୟକ୍ତି' (individual) ଗଠିତ ହୁଏ । ଯେଉଁମାନେ ଏହି ସବୁ ଉଚ୍ଚସ୍ତରରେ ଦେଖିବାର ଶକ୍ତି ଲାଭ କରି ଅଛନ୍ତି, ସେମାନେ କହନ୍ତି ଯେ ପ୍ରକୃତ ମନୁଷ୍ୟର ସ୍ୱରୂପ ଅତି ସୂକ୍ଷ୍ମ କୋମଳ ପତଳା ଅଦୃଶ୍ୟ ପ୍ରାୟ କମନୀୟ ପରଦା ପରି ଯାହାକି ବ୍ୟକ୍ତିର ଅଲଗା ଜୀବନର ଆରମ୍ଭ ସୀମା ଚିହ୍ନିତ କରେ । ସୂକ୍ଷ୍ମତମ ପଦାର୍ଥର ଏହି ବର୍ଣ୍ଣହୀନ କମନୀୟ ଆବରଣ ତାହାର ଶରୀର, ଯାହାକି ମାନବର ସମଗ୍ର କ୍ରମବିକାଶ କାଳରେ ସ୍ଥାୟୀ ହୋଇ ରହେ ଏବଂ ଏହି ସୂତ୍ରରେ ତାର ସମସ୍ତ ଜନ୍ମର ଜୀବନଗୁଡ଼ିକ ଗୁନ୍ଥା ହୋଇ ରହେ; ଏହା ବାରମ୍ବାର ଜନ୍ମ ଗ୍ରହଣକାରୀ 'ସୂତ୍ରାତ୍ମା' । ଯାହା କିଛି ନିୟମ ଅନୁମୋଦିତ କର୍ମ, ଯେଉଁ ସବୁ ବୈଶିଷ୍ଟ୍ୟ

ମହାନ ଓ ଐକ୍ୟତାନତା ପୂର୍ଣ୍ଣ, ସେସମସ୍ତର ଏହା ଆଧାର, ସେଥିପାଇଁ ଏହା ସ୍ଥାୟୀ ହୋଇ ରହେ । ମାନସିକ ପରିପୁଷ୍ଟି ଓ କ୍ରମବିକାଶର ଯେଉଁ ସ୍ତରରେ ମନୁଷ୍ୟ ଅବସ୍ଥିତ ଏହା ତାହାର ସୂଚକ । ମଣିଷର ପ୍ରତ୍ୟେକ ବୃହତ୍ ଓ ମହାନ୍ ଚିନ୍ତା, ପ୍ରତ୍ୟେକ ବିଶୁଦ୍ଧ ଓ ଉଚ୍ଚ ସ୍ତରର ଆବେଗ, ଉର୍ଦ୍ଧ୍ୱଗତି ଲାଭ କରି ଏହି ଶରୀରରେ ମିଶିଯାଏ ।

ଗୋଟିଏ ସାଧାରଣ ମଣିଷର ଜୀବନକୁ ବିଚାରକୁ ନେଇ ଦେଖା ଯାଉ ତା ଜୀବନର କେତେ ଅଂଶ କାରଣ ଶରୀର ଗଠନ କରିବା ପାଇଁ ଉଚ୍ଚ ସ୍ତରକୁ ଯାଇ ପାରିବ । କାରଣ ଶରୀରକୁ ଗୋଟିଏ ଖୁବ୍ ନରମ ପରଦା ବା ଆବରଣ ବୋଲି କଳ୍ପନା କରାଯାଉ । ଏହାକୁ ଦୃଢ଼ କରିବାକୁ ହେବ, ବିଭିନ୍ନ ରଙ୍ଗ ସଂଯୋଗରେ ସୁଦୃଶ୍ୟ କରିବାକୁ ହେବ, ପ୍ରାଣବନ୍ତ କରି କ୍ରିୟାଶୀଳ କରିବାକୁ ହେବ, ଜ୍ୟୋତିର୍ମୟ ଓ ଗୌରବାନ୍ୱିତ କରିବାକୁ ହେବ ଏବଂ ଏହା ମଣିଷର ମାନସିକ ପରିପୁଷ୍ଟି ଓ ବିକାଶ ସହିତ ଆକାରରେ ମଧ୍ୟ ବର୍ଦ୍ଧିତ ହେବ । ଲୋକଟି କ୍ରମ ବିକାଶର ନିମ୍ନ ସ୍ତରରେ ଥିବାରୁ ବିଶେଷ ମାନସିକ ବୈଶିଷ୍ଟ୍ୟ ଦେଖାଇ ପାରି ନାହିଁ । ଅନେକ କାମନା ବାସନା ପ୍ରକାଶ କରୁଛି; ସେ ସମ୍ବେଦନା ଅନୁଭବ କରି ପାରୁଛି ଏବଂ ସେଗୁଡ଼ିକୁ ପାଇବାକୁ ଇଚ୍ଛା କରୁଛି, ଏବଂ ସେହିସବୁ ପଦାର୍ଥ ପ୍ରତି ଆକୃଷ୍ଟ ହେଉଛି । ଏହି ଅନ୍ତରତମ ଜୀବନ ସତେ ଯେପରି ସେହି କମନୀୟ ପଦାର୍ଥର ସାମାନ୍ୟ ଅଂଶ ପ୍ରସାରିତ କରି ଦେଇଛି ଏବଂ ତାହାର ଚାରି ପାଖରେ ତାର ମାନସ ଶରୀର ଗଠିତ ହୋଇଛି । ଏହି ମାନସ ଶରୀର କାମଲୋକକୁ ଆସେ ଏବଂ ସେଠାରେ କାମନା ଶରୀର ସଂସ୍ପର୍ଶରେ ଆସି ତାହା ସହିତ ସଂଯୁକ୍ତ ହୁଏ । ଫଳରେ ତଦ୍ୱାରା ଗୋଟିଏ ସେତୁ ନିର୍ମିତ ହୋଇଯାଏ ଏବଂ ତା ସାହାଯ୍ୟରେ ଯାହା କିଛି ଅତିକ୍ରମ କରିବା ଯୋଗ୍ୟ ତାହା ଅତିକ୍ରମ କରିଥାଏ । ମଣିଷ ତାର ଏହି ସେତୁ ପଥରେ ତା ଜୀବନର ଭାବନା ଗୁଡ଼ିକୁ ସଂବେଦନା ଓ ତୃଷ୍ଣାମୟ ପଶୁ ସୁଲଭ ଜୀବନରେ ପୂର୍ଣ୍ଣ ଜଗତକୁ ପଠାଏ । ତାହାର ଏହି ଭାବନା ଧାରା ପଶୁ ସୁଲଭ ଉତ୍ତେଜନା ଓ ଆବେଗ ସହିତ ମିଳିତ ହୁଏ । ତାର ମାନସ ଶରୀର ଏହିପରି କାମନା ଶରୀର ସହିତ ଜଡ଼ିତ ହୋଇ ପରସ୍ପରକୁ ସଂଲଗ୍ନ କରି ରଖନ୍ତି ଏବଂ ଏହି ସଂଯୋଗ ଏପରି ନିବିଡ଼ ହୁଏ ଯେ ମୃତ୍ୟୁ ସମୟରେ ଏ ଦୁହିଁଙ୍କୁ ପୃଥକ କରିବା

କଷ୍ଟକର ହୋଇଥାଏ । କିନ୍ତୁ ଏହି ନିମ୍ନ ଲୋକର ଜୀବନ ଭିତରେ ସେ ଯଦି ଟିକିଏ ନିସ୍ୱାର୍ଥ ଚିନ୍ତା କରିଥାଏ, ତାହାର କେହି ପ୍ରିୟ ଲୋକର ସେବା କରିବାକୁ ଇଚ୍ଛା କରି ଥାଏ କିମ୍ବା କୌଣସି ବନ୍ଧୁର ଉପକାର କରିବା ପାଇଁ କିଛି ତ୍ୟାଗ ସ୍ୱୀକାର କରିଥାଏ, ତେବେ ସେ କିଛି ଅର୍ଜନ କରି ପାରେ ଯାହାକି ସ୍ଥାୟୀ ହୋଇ ପାରେ, ଯାହା ନିଃଶେଷ ହୋଇ ଯାଏ ନାହିଁ ଏବଂ ଯାହା ଭିତରେ ଉଚ୍ଚତର ଜଗତର ବୈଶିଷ୍ଟ୍ୟ ନିହିତ ରହେ । ତାହା ଉର୍ଦ୍ଧ୍ୱକୁ ଗତି କରି କାରଣ ଶରୀରରେ ମିଳିତ ହୋଇ ତାହାକୁ ଅଧିକ ସୁଦୃଶ୍ୟ କରିପାରେ ଏବଂ ଏହାର ବର୍ଣ୍ଣର ଉଜ୍ଜ୍ୱଳତା ଆଣିବାରେ ବୋଧହୁଏ ପ୍ରାରମ୍ଭିକ ସ୍ପର୍ଶ ଦିଏ । ହୁଏତ ମଣିଷର ସମଗ୍ର ଜୀବନରେ ଅଳ୍ପ କେତୋଟି ମାତ୍ର ଏପରି ଜିନିଷ ଥାଏ ଯାହା ସ୍ଥାୟୀ ହୁଏ ଏବଂ ପ୍ରକୃତ ମନୁଷ୍ୟର ପୁଷ୍ଟି ସାଧନରେ ସାହାଯ୍ୟ କରେ । ସେଥିପାଇଁ ମଣିଷର ବିକାଶ ଖୁବ୍ ଧୀର ଗତିରେ ହୋଇଥାଏ । କାରଣ ତା ଜୀବନର ଅନ୍ୟ ଯେତେ ସବୁ ଜିନିଷ ସେସବୁ ସାହାଯ୍ୟରେ ଲାଗେ ନାହିଁ ।

ଯେଉଁ ସବୁ ଅସଦ୍ ପ୍ରବୃତ୍ତି ଅଜ୍ଞତାରୁ ଜାତ ହୋଇ ଅଭ୍ୟାସଦ୍ୱାରା ପ୍ରତିପାଳିତ ହୋଇ ଥାଆନ୍ତି, ସେଗୁଡ଼ିକୁ ଆଶ୍ରୟ ଓ ଆକାର ଦେଇଥିବା କାମନା ଶରୀର କାମ ଲୋକରେ କ୍ଷୟ ହୋଇ ଯିବା ବେଳେ ସେଗୁଡ଼ିକ ସଙ୍କୁଚିତ ହୋଇ ବୀଜାକାର ଧାରଣ କରେ ଓ ମାନସ ଲୋକକୁ ଟାଣି ହୋଇଯାଏ । ସେମାନଙ୍କର ଅଙ୍କୁର ଆତ୍ମପ୍ରକାଶ କରିବା ପାଇଁ ଉପଯୁକ୍ତ ପଦାର୍ଥ ଅଭାବରୁ ମାନସ ଶରୀର ଭିତରେ ଆକୃଷ୍ଟ ହୋଇ ସୁପ୍ତ ଅବସ୍ଥାରେ ରହନ୍ତି । ପୁଣି, ଯେତେବେଳେ ମାନସ ଶରୀର ନଷ୍ଟ ହୁଏ ସେ ବୀଜଗୁଡ଼ିକ କାରଣ ଶରୀର ଭିତରକୁ ଆକୃଷ୍ଟ ହୋଇ ଯାଆନ୍ତି ଓ ସେଠାରେ ସ୍ତମ୍ଭିତ ଅବସ୍ଥାରେ ରହନ୍ତି । ଜୀବାତ୍ମା ପୁଣି ପାର୍ଥିବ ଶରୀର ଧାରଣ କରିବା ପାଇଁ ଇହ ଲୋକକୁ ଫେରି ଆସିବା ବେଳକୁ ଯେତେବେଳେ କାମଲୋକରେ ପହଞ୍ଚେ ସେସବୁ ବୀଜ ବାହାରକୁ ନିକ୍ଷିପ୍ତ ହୁଏ ଏବଂ ପୂର୍ବ ଜନ୍ମରୁ ଆଣିଥିବା ଅସତ୍ ପ୍ରବୃତ୍ତି ଭାବରେ ଆତ୍ମ ପ୍ରକାଶ କରେ । ଏଣୁ କାରଣ ଶରୀରକୁ ସତ୍‌ବସ୍ତୁ ଓ ଅସତ୍ ବସ୍ତୁ ଉଭୟର ଗନ୍ତାଘର ବୋଲି କୁହାଯାଇପାରେ । ନିମ୍ନତର ବାହନଗୁଡ଼ିକର ବିନାଶ ପରେ ଯାହା କିଛି ଅବଶିଷ୍ଟ ରହେ ତାହା ଏଥିରେ ସ୍ଥାନ ପାଏ । କିନ୍ତୁ ଯାହା କିଛି ସତ୍ ତାହା ତାର ଶରୀର ଗଠନରେ ଲାଗିଯାଏ ଏବଂ ଯାହା ସବୁ ଅସଦ୍ ତାହା ବୀଜାକାରରେ ରହିଥାଏ ।

ମଣିଷ ଇହ ଜୀବନରେ ଯେଉଁ ପାପକାର୍ଯ୍ୟ କରେ ତାର ସେ କାର୍ଯ୍ୟ ସାଧନ ନିମନ୍ତେ ଯେତେବେଳେ ମନ ନିବେଶ କରେ, ସେତେବେଳେ ସେପାପ ପ୍ରବୃତ୍ତି କେବଳ ସୁପ୍ତ ଅଙ୍କୁର ଭାବରେ କାରଣ ଶରୀରରେ ରହିବା ବେଳ ଅପେକ୍ଷା ଅଧିକ କ୍ଷତି ଘଟାଏ । ପାପ ଯେ କେବଳ ମଣିଷର ବିକାଶ ଲାଭରେ ବିଘ୍ନ ଘଟାଏ ସେତିକି ନୁହେଁ, ସୂକ୍ଷ୍ମ ସ୍ତରରେ ଯେଉଁଠି ଏହା ସ୍ଥାୟୀ ହୁଏ ସେଠାକୁ ବ୍ୟକ୍ତି ସତ୍ତାକୁ ଟାଣି ଆଣେ କହିଲେ ଚଳେ । ଯଦି ବରାବର ପାପାଚରଣ ଚାଲିଥାଏ, ଅନ୍ୟାୟ ଚାଲିଥାଏ, ତେବେ ମାନସ ଶରୀର କାମନା ଶରୀର ସହିତ ଏପରି ସମ୍ମିଶ୍ରିତ ହୋଇ ଯାଏ ଯେ, ମୃତ୍ୟୁ ପରେ ଏହାନିଜକୁ କାମନା ଶରୀରରୁ ସମ୍ପୂର୍ଣ୍ଣ ମୁକ୍ତକରି ପାରେ ନାହିଁ । ଫଳରେ ମାନସ ଶରୀରର କିୟଦଂଶ ବିଚ୍ଛିନ୍ନ ହୋଇ କାମନା ଶରୀରରେ ରହିଯାଏ ଏବଂ କାମନା ଶରୀର ବିନଷ୍ଟ ହୋଇଗଲେ ତାହା ମାନସ ଲୋକକୁ ଚାଲି ଯାଏ ଏବଂ ସେ ବ୍ୟକ୍ତିର ଅଧିକାରକୁ ଆଉ ଆସେ ନାହିଁ । ଆମେ ଯଦି ପୁଣି ସେହି ପରଦା ବା ବୁଦ୍‌ବୁଦ (କାରଣ ଶରୀର) କଳ୍ପନାକୁ ଫେରି ଯିବା ତେବେ ବୁଝି ପାରିବା ପାପମୟ ଜୀବନ ଯାତ୍ରାଦ୍ୱାରା ଏହି ଆବରଣ କିଛି ପରିମାଣରେ କ୍ଷୟ ହୋଇଯାଏ, ଏହାଦ୍ୱାରା ତାର କ୍ରମ ବିକାଶ ଯେ କେବଳ ବିଳମ୍ବିତ ହୁଏ, ତା ନୁହେଁ, ବରଂ ଏପରି କିଛି କ୍ଷତି ଘଟେ ଯଦ୍ୱାରା କାରଣ ଶରୀର ଗଠନ କରିବା କଠିନତର ହୋଇଯାଏ । ପାପାଚରଣ ସେହି ଆବରଣଟିର ବିକାଶ ଶକ୍ତିକୁ ଏକ ପ୍ରକାରେ ଖର୍ବ କରି ଦିଏ ଏବଂ କେତେକାଂଶରେ କ୍ଲୀବତ୍ୱ ଓ ଶୁଷ୍କତା ଆଣିଦିଏ । ଏହାଛଡ଼ା ସାଧାରଣ ଲୋକ ପକ୍ଷେ କାରଣ ଶରୀରର ଅନ୍ୟ କିଛି କ୍ଷତି ଘଟେ ନାହିଁ ।

କିନ୍ତୁ ଯେଉଁ କ୍ଷେତ୍ରରେ ଜୀବାତ୍ମା ବୁଦ୍ଧି ବୃତ୍ତି ଓ ଇଚ୍ଛା ଶକ୍ତିରେ ବଳବାନ ହେବା ସଙ୍ଗେ ସଙ୍ଗେ ନିସ୍ୱାର୍ଥପରତା ଓ ପ୍ରେମର ଉତ୍କର୍ଷ ସାଧନ ନ କରେ ସେଠାରେ କାରଣ ଶରୀର ବିକାଶ ଲାଭ କରିବା ସାଙ୍ଗରେ ବୃହତ୍ତର ଆକାର ନ ହୋଇନିଜ କେନ୍ଦ୍ରର ଚତୁର୍ଦ୍ଦିଗରେ ସ୍ୱାର୍ଥପରତାର ବେଷ୍ଟନୀ ଭିତରେ ନିଜକୁ ସଙ୍କୁଚିତ କରି ରଖେ ଏବଂ ତାର ସମସ୍ତ ବିକଶିତ ଶକ୍ତିକୁ ସର୍ବ ସାଧାରଣଙ୍କ ହିତରେ ନ ଲଗାଇ ନିଜ ପାଇଁ ବ୍ୟବହାର କରେ । ଏହି ସବୁ ବିଷୟରେ ପୃଥିବୀର ବିଭିନ୍ନ ଧର୍ମ ଗ୍ରନ୍ଥମାନଙ୍କରେ ଲିଖିତ ହୋଇଛି ଯେ ଏପରି ଜୀବାତ୍ମା

ଗଣ ସଜ୍ଞାନରେ ସୁଚିନ୍ତିତ ଭାବରେ ଭଗବାନଙ୍କ ନିୟମର ବିରୁଦ୍ଧାଚରଣ କରନ୍ତି ଓ କ୍ରମବିକାଶ ବିରୁଦ୍ଧରେ ଯୁଦ୍ଧ କରନ୍ତି । ସେଥିପାଇଁ ସେମାନେ ବେଶୀ ବିପଜ୍ଜନକ ଓ ବଦ୍ଧମୂଳ ପାପୀ ହେବାର ସମ୍ଭାବନା ଥାଏ । ଏପରି ସ୍ଥଳେ କାରଣ ଶରୀର ମାନସ ଲୋକର ସ୍ୱାର୍ଥାନ୍ୱେଷୀ ଧୀଶକ୍ତି ଓ ଇଚ୍ଛାଶକ୍ତିର ସ୍ପନ୍ଦନ ଦ୍ୱାରା ଗଠିତ ହୋଇ ସଂକୋଚନ ଜନିତ କୃଷ୍ଣବର୍ଣ୍ଣ ଧାରଣ କରେ ଏବଂ ତାର ସ୍ୱାଭାବିକ ଉଜ୍ଜ୍ୱଳତା ହରାଇଥାଏ । ସ୍ୱଳ୍ପ ବିକଶିତ କୌଣସି ଜୀବାତ୍ମା କିମ୍ବା କୌଣସି ଆବେଗ ପ୍ରସୂତ ବା ସାଧାରଣ ମନସିକ ଦୋଷ ଜନିତ କାର୍ଯ୍ୟ ଏପରି କ୍ଷତି ଘଟାଇ ପାରେ ନାହିଁ । ଏପରି ସୁଦୂର ପ୍ରସାରୀ କ୍ଷତି ସାଧନ କରିବାକୁ ହେଲେ ଜୀବାତ୍ମା ଯଥେଷ୍ଟ ବିକଶିତ ହେବା ଦରକାର ଏବଂ ମାନସ ଲୋକରେ ତାର କାର୍ଯ୍ୟ କରିବା କ୍ଷମତା ଥିବା ଦରକାର । ଅତଏବ ଉଚ୍ଚାଭିଳାଷ, ଅହଂକାର ଓ ଧୀଶକ୍ତି ସ୍ୱାର୍ଥପର ଉଦ୍ଦେଶ୍ୟରେ ବ୍ୟବହୃତ ହେଲେ, ନିମ୍ନ ପ୍ରକୃତିର ସାଧାରଣ ଦୋଷଗୁଡ଼ିକ ଅପେକ୍ଷା ଏହା ବହୁଗୁଣରେ ମାରାତ୍ମକ ଓ ବିଷମୟ ଫଳ ପ୍ରଦାନ କରିଥାଏ । ସେଥିପାଇଁ କଥିତ ଅଛି - ଫରିସୀମାନେ (କୁପଣ୍ଡିତ) ସର୍ବସାଧାରଣ ଓ ପାପୀମାନଙ୍କ ଅପେକ୍ଷା ଭଗବାନଙ୍କ ରାଜ୍ୟରୁ ଅଧିକ ଦୂରରେ ("Pharisee" is aften farther from the "Kingdom of God than "the publican and the sinner") ଏହି ପଥ ଦେଇ ଯାଦୁକର ଐନ୍ଦ୍ରଜାଲିକ ତିଆରି ହୋଇଥାଆନ୍ତି । ସେମାନେ ଆବେଗ ଓ ବାସନାକୁ ବଶୀଭୂତ କରି ଇଚ୍ଛାଶକ୍ତି ଓ ଉଚ୍ଚତର ମାନସିକ ଶକ୍ତି ଅର୍ଜନ କରନ୍ତି । କିନ୍ତୁ ସେ ଶକ୍ତିକୁ ଆନନ୍ଦରେ ମାନବ ଜାତିର କ୍ରମ ବିକାଶର ସାହାଯ୍ୟ ଦିଗରେ ନ ଲଗାଇ ନିଜ ପାଇଁ ଯାହା କିଛିସମ୍ଭବ ସଂଗ୍ରହ କରିବାକୁ ଚେଷ୍ଟା କରନ୍ତି, ସବୁ ଭୋଗ କରନ୍ତି କାହାକୁ ଭାଗୀଦାର କରନ୍ତି ନାହିଁ । ଏହାଦ୍ୱାରା ସମଷ୍ଟିଗତ ଭାବର ବିରୁଦ୍ଧାଚରଣ ହେବାରୁ ସେମାନେ କ୍ରମ ବିକାଶ ତ୍ୱରାନ୍ୱିତ କରିବା ପରିବର୍ତ୍ତେ ମନ୍ଥର କରି ଦିଅନ୍ତି । ଫଳତଃ ସେମାନେ ସମସ୍ତଙ୍କ ସହିତ ମେଳ ଖାଉଥିବା ସ୍ପନ୍ଦନ ବଦଳରେ ବିପରିତ ଧର୍ମୀ ସ୍ପନ୍ଦନ ସୃଷ୍ଟି କରିବାରେ ଲାଗନ୍ତି, ସେହି ହେତୁ କ୍ରମ ବିକାଶର ସୁଫଳ ଲାଭ କରିବାରୁ ବଞ୍ଚିତ ହୋଇ ସେମାନଙ୍କ ଜୀବାତ୍ମାଗଣ ଧ୍ୱଂସ ପଥରେ ଗତି କରନ୍ତି ।

ଆମେ ଯଦି ଏହି କାରଣ ଶରୀର ସମ୍ପର୍କରେ କିଛିଟା ବୁଝିବାକୁ ଆରମ୍ଭ କରୁଁ ତାହାହେଲେ ଏହାର ବିକାଶ ସାଧନ କରିବା ଜୀବନର ସୁନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ରୂପେ ଗ୍ରହଣ କରି ପାରିବା । ଆମେ ନିସ୍ୱାର୍ଥପର ଭାବରେ ଚିନ୍ତା କରିବାଦ୍ୱାରା ଏହାର ଅଭିବୃଦ୍ଧି ଘଟାଇବା । ଜୀବନ ପରେ ଜୀବନ ଲକ୍ଷ ଲକ୍ଷ ବର୍ଷ ଧରି ବ୍ୟକ୍ତି ସତ୍ତାର ଏହି ବିକାଶ ଚାଲି ଥିବ ଏବଂ ଏହି କ୍ରମ ବିକାଶର ସହାୟତା କରିବାରେ ଚେଷ୍ଟିତ ହୋଇ ଆମେ ଭଗବାନଙ୍କ ଇଚ୍ଛା ସହିତ ସାମଞ୍ଜସ୍ୟ ରଖି କାର୍ଯ୍ୟ କରିବା ଓ ଯେଉଁ ଉଦ୍ଦେଶ୍ୟରେ ଏହି ଜଗତକୁ ଆସିଛନ୍ତି ସେ ଉଦ୍ଦେଶ୍ୟ ପୂରଣ କରିବା । ଯାହା କିଛି ଭଲ ଏହି କାରଣ ଶରୀରର ଉପାଦାନରେ ଥରେ ଗୁନ୍ଥା ହୋଇଗଲେ କେବେ ଆଉ ନଷ୍ଟ ହୁଏ ନାହିଁ ବା ବିଚ୍ୟୁତ ହୁଏ ନାହିଁ । କାରଣ ଏହା ହିଁ ପ୍ରକୃତ ମନୁଷ୍ୟ ଯେ କି ଚିରକାଳ ବଞ୍ଚିଥାଏ ।

ଅତଏବ ଆମେ ଦେଖୁଛନ୍ତି ଯେ କ୍ରମ ବିକାଶର ନିୟମ ଅନୁଯାୟୀ ଯାହା କିଛି ଖରାପ, ତାହା ଆପାତତଃ ଯେତେ ଶକ୍ତିଶାଳୀ ବୋଲି ଆରମ୍ଭରେ ମନେ ହେଉପଛେ, ତାହାର ନିଜ ଭିତରେ ନିଜ ବିନାଶର ଅଙ୍କୁର ବିଦ୍ୟମାନ ରହିଥାଏ । ଏହାର ରହସ୍ୟ ହେଉଛି ଯାହା କିଛି ପାପ ତହିଁରେ ଐକ୍ୟତାନତା ନ ଥାଏ ଏବଂ ଶୀଘ୍ର ହେଉ ବା ବିଳମ୍ବରେ ହେଉ, ମହା ଜାଗତିକ ନିୟମ ବିରୁଦ୍ଧରେ ସଂଘର୍ଷରେ ଆସି ଖଣ୍ଡବିଖଣ୍ଡିତ ହୁଏ ଏବଂ ବିକ୍ଷିପ୍ତ ଓ ଚୂର୍ଣ୍ଣିଭୂତ ହୋଇ ଧୂଳିରେ ମିଳାଇଯାଏ । ଅନ୍ୟ ପକ୍ଷରେ, ଯାହା କିଛି ସତ୍ ତାହା ଏହି ମହାଜାଗତିକ ନିୟମ ସହିତ ଐକ୍ୟତାନତା ରକ୍ଷା କରୁଥିବାରୁ ଏହା ସେହି ନିୟମ ଅଧୀନରେ ତାହାର ଅନୁଗାମୀ ହୋଇ କ୍ରମବିକାଶ ଧାରାର ଅଙ୍ଗୀଭୂତ ହୋଇଯାଏ । ଯାହା ଉଚିତ କର୍ମ ଭାବରେ କରା ଯାଇଥାଏ ତାହା ତାଙ୍କର (ଈଶ୍ୱରଙ୍କର) ଆମର ନୁହେଁ । ତାହା କେବେ କ୍ଷୟ ପ୍ରାପ୍ତ ହୁଏ ନାହିଁ ବା ଏହାକୁ କେବେ ହେଲେ ବିନାଶ କରି ହେବ ନାହିଁ । ଏହା କେବଳ ମଣିଷର ଆଶାଜନକ କଥା ନୁହେଁ, ପରିଶେଷରେ ତାର ଜୟ ଲାଭ ବିଷୟରେ ନିଶ୍ଚିତ ବାର୍ତ୍ତା । ତାର କ୍ରମବିକାଶ ଯେତେ ମନ୍ଥର ଗତିରେ ହେଉ ପଛେ ତାହା ସଚଳ ରହିଛି, ପଥ ଯେତେ ଦୀର୍ଘ ହେଉ ପଛେ, ଏହାର ଅନ୍ତ ଅଛି । ବ୍ୟକ୍ତି ସତ୍ତା, ଯାହା ଆମର ଜୀବାତ୍ମା, ସେ ବିକାଶ ଲାଭ କରୁଛି ଏବଂ ତାହା ଆଉ ଧ୍ୱଂସ ପ୍ରାପ୍ତ ହୋଇପାରିବ ନାହିଁ । ଆମର ଅଜ୍ଞତାବଶତଃ ଏହାର ବିକାଶ ପ୍ରୟୋଜନ

ଅନୁପାତରେ ଯେତେ ମନ୍ଥର ଗତିରେ ହେଉପଛେ ଆମେ ଯାହା କିଛି ଏଥିରେ ଯୋଗ କରିବୁ ତାହା ଯେତେ ଅଳ୍ପ ହେଉ ନା କାହିଁକି ଚିରକାଳ ସ୍ଥାୟୀ ହେବ ଏବଂ ଆଗାମୀ ଯୁଗମାନଙ୍କରେ ମଧ୍ୟ ଆମର ଅଧିକାର ଭୁକ୍ତ ହୋଇରହିବ ।

## ଅନ୍ୟାନ୍ୟ ଯାନ

ଆମେ ଆଉ ଗୋଟିଏ ପାହାଚ ଯାଇପାରିବା, କିନ୍ତୁ ସେଠାରେ ଏପରି ଏକ ଉଚ୍ଚଲୋକରେ ପ୍ରବେଶ କରିବା ଯାହା ଆମବୁଦ୍ଧିର ଅଗମ୍ୟ ଓ କଳ୍ପନାର ଅତୀତ ମଧ୍ୟ । ଆମର କାରଣ ଶରୀର ସର୍ବୋଚ୍ଚ ସ୍ତରର ଦେହ ନୁହେଁ ଏବଂ 'ମାନସ' ବା 'ଅଧ୍ୟାତ୍ମ ଅହଂ' ନୁହେଁ । ଏହା ମ ।ନସ ଓ ବୁଦ୍ଧିର ମିଳିତ ଓ ସମ୍ମିଶ୍ରିତ ଅବସ୍ଥା । ଏହା ହିଁ ମନୁଷ୍ୟର କ୍ରମବିକାଶର ଚରମ ପର୍ଯ୍ୟାୟ ଏବଂ ଜନ୍ମମୃତ୍ୟୁ ଚକ୍ରରେ ଶେଷ ଆବର୍ତ୍ତନ । ମାନସ ଲୋକର ଉର୍ଦ୍ଧ୍ୱରେ 'ବୁଦ୍ଧି ଲୋକ' । କେହି କେହି ତୁରୀୟ (ଚତୁର୍ଥ) ଲୋକ ବୋଲି କହନ୍ତି । ଏହି ଲୋକରେ ଚେତନାର ଯାନ ହେଉଛି 'ଆଧ୍ୟାତ୍ମିକ ଶରୀର' (spiritual body) ବା 'ଆନନ୍ଦମୟ କୋଷ' । ଯୋଗୀମାନେ କେବଳ ଏହି ଲୋକକୁ ଉଠିପାରନ୍ତି । ଏଠାକୁ ଆସି ଏହି ମହିମାମୟ ଜଗତର ଚିରନ୍ତନ ଆନନ୍ଦ ଆସ୍ୱାଦନ କରିପାରନ୍ତି । ଏଠାରେ ସେମାନେ ନିଜ ଚେତନାରେ ଅନ୍ତର୍ନିହିତ ଏକତ୍ୱ ଉପଲବ୍ଧି କରିପାରନ୍ତି । ସେତେବେଳେ ଏହା ସେମାନଙ୍କ ନିକଟରେ ବିଚାର ନିଷ୍ପନ୍ନ ବିଶ୍ୱାସ ପରିବର୍ତ୍ତେ ଅଭିଜ୍ଞତା ଲବ୍ଧ ସତ୍ୟରେ ପରିଣତ ହୁଏ ।

ମଣିଷର ଏପରି ଗୋଟିଏ ସମୟ ଆସେ ଯେତେବେଳେ ତାର ପ୍ରେମ, ପ୍ରଜ୍ଞା ଓ ଶକ୍ତି ପୁଷ୍ଟି ଲାଭ କରିଯାଏ ଏବଂ ସେ ଏକ ମହାନ ଦ୍ୱାର ଅତିକ୍ରମ କରି ତା କ୍ରମବିକାଶର ଏକ ବିଶିଷ୍ଟ ସ୍ତରରେ ଉପନୀତ ହୁଏ । ଏହାହିଁ ଦୀକ୍ଷା ଲାଭର ପ୍ରବେଶ ଦ୍ୱାର । ତାର ଗୁରୁଦେବ (Master) ଯେତେବେଳେ ତାକୁ ଏହା ଭିତର ଦେଇ ନେଇ ଯାହାନ୍ତି, ସେତେବେଳେ ସେ ପ୍ରଥମେ ଆଧ୍ୟାତ୍ମିକ ଶରୀର ଲାଭ କରେ ଏବଂ ଭୂଲୋକ, କାମଲୋକ ଏପରିକି ମାନସ ଲୋକର ସବୁ ବୈଷମ୍ୟ ଭିତରେ ନିହିତ ଏକତ୍ୱର ଅଭିଜ୍ଞତା ଉପଲବ୍ଧି କରେ ।

ଆମର ଏହି ସବୁ ଜଗତକୁ ପଛରେ ପକାଇ ଦେଇ ମଣିଷ ଆଧ୍ୟାତ୍ମିକ ଶରୀର ଧାରଣ କରି ଏସବୁର ଉର୍ଦ୍ଧ୍ୱକୁ ଉଠିଯାଏ । ସେତେବେଳେ ସେ ତାର ଅଭିଜ୍ଞତା ଭିତରେ ପ୍ରଥମେ ଦେଖିବାକୁ ପାଏ, ଏହି ସମସ୍ତ ବୈଷମ୍ୟ କେବଳ ମାତ୍ର ଏହି ତିନି ଲୋକର ସୀମାରେ ଆବଦ୍ଧ; ସେ ଅନ୍ୟ ସମସ୍ତଙ୍କ ସହିତ ଏକ ଏବଂ ଆତ୍ମଚେତନାକୁ ନ ହରାଇ ତାର ଚେତନାକୁ ସଂପ୍ରସାରିତ କରି ଅନ୍ୟର ଚେତନାକୁ କୋଳାଗ୍ରତ କରିପାରିବ, ସତ କହିଲେ ସେମାନଙ୍କ ସହିତ ଏକାକାର ହୋଇଯାଇପାରିବ । ମନୁଷ୍ୟ ଯେଉଁ ଏକାତ୍ମତା ସର୍ବଦା ଆକାଂକ୍ଷା କରୁଛି ତାହା ସେ ଏଠାରେ ଲାଭ କରେ । ସେ ଅନୁଭବ କରେ ଯେ ଏହିଠାରେ ସେ ଏକତ୍ୱ ଲାଭ କରିଛି ଏବଂ ନିମ୍ନତର ଲୋକରେ ସେ ଏହା ଉପଲବ୍ଧି କରିବାକୁ ବୃଥା ଚେଷ୍ଟା କରୁଥିଲା । ସେଠାରେ ତାର ଯେଉଁ ଉପଲବ୍ଧି ହେଲା ନିମ୍ନତର ଲୋକରେ ତାହା ତା ସ୍ୱପ୍ନର ଅଗୋଚର । ସେ ଏଠାରେ ସମସ୍ତ ମାନବ ସମାଜକୁ ସମୂହ ଭାବରେ ତା ନିଜର ଅନ୍ତରାତ୍ମା ସହିତ ଏକ ଓ ଅଭିନ୍ନ ହୋଇଯାଇଥିବା ଅନୁଭୂତି ଲାଭକରେ ।

**କ୍ଷଣସ୍ଥାୟୀ ଶରୀର** – ମଣିଷର ଶରୀର ବିଷୟରେ କହିଲାବେଳେ ଅନ୍ୟ କେତୋଟି କ୍ଷଣସ୍ଥାୟୀ ଶରୀର କଥା ଛାଡ଼ି ଯାଇ ହେବ ନାହିଁ । ଏମାନଙ୍କର ସ୍ୱଭାବ ଦୃଷ୍ଟିରୁ ଏମାନଙ୍କୁ 'କୃତ୍ରିମ ଶରୀର' କୁହାଯାଇ ପାରେ । କୌଣସି ଲୋକ ପାର୍ଥିବ ଶରୀର ଛାଡ଼ି ଯିବା ସଙ୍ଗେ ସଙ୍ଗେ କାମନା ଶରୀର ବ୍ୟବହାର କରିପାରେ, କିନ୍ତୁ କାମନା ଶରୀରରେ କ୍ରିୟାଶୀଳ ଥିବାକାଳରେ ସେ କାମଲୋକରେ ହିଁ ସୀମାବଦ୍ଧ ରହେ । ଅବଶ୍ୟ ମାନସ ଲୋକକୁ ଯିବା ପାଇଁ ସେ ମାନସ ଶରୀରର (ନିମ୍ନ ମାନସ ଲୋକର) ବ୍ୟବହାର କରିବା ମଧ୍ୟ ସମ୍ଭବ । ଏହି ଶରୀରରେ ସେ ଅବାଧରେ କାମଲୋକ ଏବଂ ପାର୍ଥିବ ଲୋକରେ ବିଚରଣ କରିପାରେ । ଏହି ରୂପେ ବ୍ୟବହୃତ ମାନସ ଦେହକୁ ଅନେକ କ୍ଷେତ୍ରରେ 'ମାୟାବୀ ରୂପ' ଅର୍ଥାତ୍ ମାୟାର ଶରୀର କୁହାଯାଏ । ପ୍ରକୃତ ପକ୍ଷେ ଏହା ମଧ୍ୟ ମାନସ ଶରୀର, ତେବେ ବିଶେଷ କାର୍ଯ୍ୟ ପାଇଁ ଏହାକୁ ପୁନର୍ବିନ୍ୟାସ କରାଯାଇଥାଏ । ମନୁଷ୍ୟ ଏହାକୁ ନିଜର ଅନୁରୂପ କରି ତିଆରି କରିଥାଏ ବା ନିଜ ପ୍ରତିକୃତି ପରି ରୂପ ଦେଇଥାଏ । ତା ପରେ ଏହି ଅସ୍ଥାୟୀ କୃତ୍ରିମ ଶରୀର ସାହାଯ୍ୟରେ ସେ ତିନିଲୋକରେ ନିଜ ଇଚ୍ଛା

ଅନୁଯାୟୀ ଭ୍ରମଣ କରିବାରେ ସ୍ୱାଧୀନତା ପାଇଥାଏ ଏବଂ ମଣିଷର ସାଧାରଣ ସୀମିତ ଅବସ୍ଥାକୁ ଅତିକ୍ରମ କରିଯାଏ । ବ୍ରହ୍ମବିଦ୍ୟା ବିଷୟକ ପୁସ୍ତକମାନଙ୍କରେ କୁହାଯାଇଛି ମନୁଷ୍ୟ ଏହି କୃତ୍ରିମ ଶରୀର ସାହାଯ୍ୟରେ ଗୋଟିଏ ଦେଶରୁ ଅନ୍ୟ ଦେଶ ଭ୍ରମଣ କରିପାରେ । ସେଠାରେ ଯେଉଁ ନୂତନ ସତ୍ୟର ସନ୍ଧାନ ପାଏ ବା ନୂତନ ଅଭିଜ୍ଞତା ଅର୍ଜନ କରେ ସେ ସକଳ ସମ୍ପଦ ସଂଗ୍ରହ କରି ଜାଗ୍ରତ ଚେତନାକୁ ଘେନି ଆସେ । ଏପରି ଉନ୍ନତ ଶରୀର ବ୍ୟବହାର କରିବାର ସୁବିଧାଟି ହେଉଛି କାମନା ଶରୀର ପରି ଏହା ପ୍ରତାରଣା ବା କୁହୁକର ବଶବର୍ତ୍ତୀ ହୁଏ ନାହିଁ । ଅଭିଜ୍ଞତା ନ ଥିଲେ କାମନା ଶରୀରର ଇନ୍ଦ୍ରିୟମାନେ ଅନେକ ସମୟରେ ଭ୍ରମାତ୍ମକ ଧାରଣା ସୃଷ୍ଟି କରନ୍ତି ଏବଂ ବହୁତ ଅଭିଜ୍ଞତା ଥିଲେ ଯାଇ ସେମାନଙ୍କର ବର୍ଣ୍ଣନା ବିଶ୍ୱାସ ଯୋଗ୍ୟ ହୁଏ । କିନ୍ତୁ ସ୍ୱଳ୍ପ ସମୟ ପାଇଁ ମାନସଲୋକରେ ଗଠିତ ମାୟାବୀ ରୂପ ନିର୍ଭୁଲ ଦୃଷ୍ଟିରେ ଦେଖେ ଓ ନିର୍ଭୁଲ ଭାବେ ଶୁଣେ । କାମଲୋକର କୌଣସି କୁହୁକ ଏହାକୁ ବିଭ୍ରାନ୍ତ କରିପାରେ ନାହିଁ । ଅତଏବ ଯେଉଁମାନେ ଏ ପ୍ରକାର ଭ୍ରମଣ କରିବା ଶିକ୍ଷା କରିପାରିଛନ୍ତି, ସେମାନେ ଏହି ଶରୀର ବ୍ୟବହାର କରିବା ସୁବିଧା ଜନକ ମନେକରନ୍ତି । ଯେତେବେଳେ ଇଚ୍ଛାହୁଏ ଏପରି ଶରୀର ଗ୍ରହଣ କରନ୍ତି ଏବଂ ଯେଉଁ କାର୍ଯ୍ୟ କରିବା ଉଦ୍ଦେଶ୍ୟରେ ଏହି ଶରୀର ଧରିଥାଆନ୍ତି ତାହା ସାଧିତ ହେଲା ପରେ ଏହାକୁ ପରିତ୍ୟାଗ କରନ୍ତି । ଜଣେ ଶିକ୍ଷାର୍ଥୀ ପକ୍ଷରେ ଅନ୍ୟଥା ଯେଉଁ ଜ୍ଞାନ ଲାଭକରିବା ସମ୍ଭବ ହୋଇ ନ ଥାନ୍ତା ତାହା ମାୟବୀ ରୂପବେଳରେ ଲାଭ କରି ପାରେ । ଅନେକ ସମୟରେ ଅନ୍ୟାନ୍ୟ ଅଳ୍ପକାଳସ୍ଥାୟୀ ଶରୀରକୁ ମଧ ମାୟବୀ ରୂପ କୁହାଯାଇଥାଏ । କିନ୍ତୁ ପୂର୍ବୋକ୍ତ ଶରୀର ପାଇଁ କେବଳ ଏହି ନାମ ବ୍ୟବହାର କଲେ ଭଲ ହେବ । କୌଣସି ଲୋକ ଏପରି ଅଳ୍ପକାଳ ସ୍ଥାୟୀ ଶରୀର ଧାରଣ କରି ଗୋଟିଏ ଦୂରବର୍ତ୍ତୀ ସ୍ଥାନରେ ଉପସ୍ଥିତ ହୋଇପାରେ; କିନ୍ତୁ ଏପରି ଦେହ ଚେତନାର ବାହନ ହୋଇ ନ ଥାଏ । ବସ୍ତୁତଃ ଏହା କାମଲୋକର ଉପାଦାନରେ ତିଆରି 'ସଂକଳ୍ପ ରୂପ' ହେବା ଖୁବ୍ ସମ୍ଭବ । ଏ ପ୍ରକାର ଶରୀର ସାଧାରଣତଃ କୌଣସି ନିର୍ଦ୍ଦିଷ୍ଟ ଭାବନା ବା ବିଶେଷ ସଂକଳ୍ପରବାହନ ହୋଇଥାଏ ଫଳରେ ତା ବାହାରେ ସେ ଅନ୍ୟ କୌଣସି ପ୍ରକାରେ ଚେତନା ପ୍ରକାଶ କରିପାରେ ନାହିଁ ।

# ମନୁଷ୍ୟ ଶରୀରର ପ୍ରଭା

ଆମେ ବର୍ତ୍ତମାନ 'ମନୁଷ୍ୟ ଶରୀରର ପ୍ରଭା'ର ତାତ୍ପର୍ଯ୍ୟ ପ୍ରକୃତରେ କଣ ତାହା ପୂର୍ଣ୍ଣ ମାତ୍ରାରେ ବୁଝିପାରିବା । ଏହା ହିଁ ପ୍ରକୃତ ମନୁଷ୍ୟ - ଏହା ଏକ ସଙ୍ଗରେ ଚେତନାର ଚାରିଗୋଟି ଲୋକରେ ପ୍ରକଟିତ ହୋଇଥାଏ । ଏହାର କ୍ରମ ବିକାଶ ଅନୁପାତରେ ପ୍ରତ୍ୟେକ ଲୋକରେ ମନୁଷ୍ୟର କାର୍ଯ୍ୟ ଦକ୍ଷତା ଲାଭ ହୋଇଥାଏ । ଏଥିରେ ମଣିଷର ସବୁଯାକ ଶରୀର, ତା ଚେତନାର ସବୁଯାକ ବାହନ ଏକୀଭୂତ ହୋଇ ଥାଆନ୍ତି । ଗୋଟିଏ କଥାରେ ଏହାହିଁ ମଣିଷର ମୌଳିକ ସ୍ୱରୂପ, ମଣିଷକୁ ବେଷ୍ଟନ କରିଥିବା ଏକ ବଳୟ ବା ବାୟବୀୟ ପଦାର୍ଥ ଭାବରେ ଗ୍ରହଣ ନ କରି ଏହାକୁ ମଣିଷର ମୌଳିକ ସ୍ୱରୂପ ବୋଲି ଗ୍ରହଣ କରିବା ଉଚିତ । ସର୍ବାପେକ୍ଷା ମହିମା ମଣ୍ଡିତ 'ଅଧ୍ୟାତ୍ମିକ ଦେହ' ଦୀକ୍ଷିତମାନଙ୍କ ଭିତରେ ଦେଖିବାକୁ ମିଳେ । ତାହା ଭିତର ଦେଇ ଜୀବନ୍ତ ଆତ୍ମ-ସ୍ଫୁଲିଙ୍ଗ (ହିରଣ୍ୟ ଗର୍ଭ) କାର୍ଯ୍ୟ କରନ୍ତି । ଏହି ଆଧ୍ୟାତ୍ମିକ ଶରୀର ମଣିଷର ବୁଦ୍ଧି ଲୋକରେ ପ୍ରକଟିତ ରୂପ । ତାର ନିମ୍ନ ସ୍ତରରେ ଏହାକାରଣ ଶରୀର ମାନସଲୋକର ଅରୂପ ମଣ୍ଡଳରେ ପ୍ରକଟିତ ରୂପ ଏବଂ ବ୍ୟକ୍ତି ସତ୍ତାର ଆବାସ ସ୍ଥଳ । ତତ୍‌ପରେ ନିମ୍ନତର ମାନସଲୋକର ମାନସ ଶରୀର ଏବଂ ପରକୁ ପରକାମନା ଶରୀର, ଇଥରୀୟ ଯମଜ ଓ ସ୍ଥୂଳ ଶରୀର । ଏ ପ୍ରତ୍ୟେକ ଶରୀର ତା ନିଜ ଲୋକର ପଦାର୍ଥ କଣିକା ଦ୍ୱାରା ଗଠିତ ଏବଂ ସେହି ସେହି ଲୋକରେ ମଣିଷର ସ୍ୱରୂପ ଯେପରି ଥାଏ ତାହା ପ୍ରକାଶ କରନ୍ତି ।

ଜଣେ ଅନୁଶୀଳନକାରୀ ଶିକ୍ଷାର୍ଥୀ ଯେତେବେଳେ କୌଣସି ଏକ ଲୋକକୁ ଲକ୍ଷ୍ୟକରେ ସେ ତାହାର ଏହି ସବୁ ବିଭିନ୍ନ ସ୍ତରର ଉପାଦାନରେ ଗଠିତ ଶରୀରଗୁଡ଼ିକୁ ପୃଥକ ଭାବରେ ଦେଖିପାରେ । କେଉଁଲୋକରେ କ୍ରମବିକାଶର କେଉଁ ସ୍ତରରେ ଲୋକଟି ଉପନୀତ ହୋଇଛି ତାର ସୂଚନା ସେଥିରୁ ମିଳିଯାଏ । ଆହୁରି ଉଚ୍ଚତର ଦୃଷ୍ଟିଶକ୍ତି ଲାଭ କଲେ ସେ ଶିକ୍ଷାର୍ଥୀ ଏହି ସବୁ ଶରୀର ଗୁଡ଼ିକର କ୍ରିୟାଶୀଳତାକୁ ମଧ୍ୟ ସମ୍ପୂର୍ଣ୍ଣ ରୂପେ ଲକ୍ଷ୍ୟକରି ପାରେ । ପାର୍ଥିବଶରୀର ଅନ୍ୟାନ୍ୟ ଶରୀରଗୁଡ଼ିକର କେନ୍ଦ୍ରରେ ଏକପ୍ରକାର ଦାନାବନ୍ଧା ଅବସ୍ଥାରେ ଦେଖିବାକୁ ମିଳେ । ଅନ୍ୟାନ୍ୟ ଦେହଗୁଡ଼ିକ ଏହା ଭିତରେ ଅନୁପ୍ରବେଶ କରି ରହିଥାଆନ୍ତି ଏବଂ ଏହି ପାର୍ଥିବ ଶରୀର ସବୁ ଶରୀର ଭିତରେ କ୍ଷୁଦ୍ରତମ ହୋଇଥିବାରୁ ଅନ୍ୟମାନେ ତାର ବାହାର ସୀମା

ଅତିକ୍ରମ କରି ରହିଥାଆନ୍ତି । ତା'ପରେ କାମନା ଶରୀର କଥା । ଏଥିରେ ତାର କାମପ୍ରକୃତି ଦେଖିବାକୁ ମିଳେ ଯାହା କି ସାଧାରଣ ଲୋକର ଅଧିକାଂଶ ଭାଗ ଗଠନ କରିଥାଏ । ଏହା ଉତ୍ତେଜନା, ଆବେଗ ଓ ନିମ୍ନତର ତୃଷ୍ଣା ଓ ବାସନାରେ ପରିପୂର୍ଣ୍ଣ, କିନ୍ତୁ ଏମାନଙ୍କର ଉପାଦାନ ଘନତ୍ୱରେ ଓ ବର୍ଣ୍ଣରେ ମନୁଷ୍ୟର ପବିତ୍ରତାର ଅନୁପାତ ଅନୁସାରେ ଭିନ୍ନଭିନ୍ନ ହୋଇଥାଏ ।ଅମାର୍ଜିତ ମଣିଷର ଉପାଦାନ ସ୍ଥୂଳତର ଓ ମାର୍ଜିତ ମଣିଷର ଉପାଦାନ ସୂକ୍ଷ୍ମତର; ପୁଣି ଯେଉଁଲୋକ କ୍ରମବିକାଶ ପଥରେ ଅଧିକ ଅଗ୍ରଗତି କରିଥାଏ ତାର ଉପାଦାନ ସୂକ୍ଷ୍ମତମ ହୋଇଥାଏ । ତା ପରେ ମାନସ ଶରୀର, ଅଧିକାଂଶ ଲୋକଙ୍କର ଏହା ପରିପୁଷ୍ଟ ହୋଇ ନ ଥାଏ, ଯଦିଓ ମାନସିକ ଓ ନୈତିକ ପ୍ରକୃତି ଭେଦରେ ଏହାର ବର୍ଣ୍ଣ ଭିନ୍ନ ଭିନ୍ନ ହୁଏ । ଏହାର ପରବର୍ତ୍ତୀ କାରଣ ଶରୀର, ଏତେ ଅପରିପୁଷ୍ଟ, ଏହାର ବର୍ଣ୍ଣ ଏତେ ଫିକା ଏବଂ ଏହାର କ୍ରିୟାଶୀଳତା ଏତେ କ୍ଷୀଣ ଯେ ଅଧିକାଂଶ କ୍ଷେତ୍ରରେ ଯତ୍ନ ନ କଲେ ଏହି ଶରୀର ପ୍ରାୟ ଦେଖାଯାଏ ନାହିଁ । କିନ୍ତୁ କୌଣସି ଉନ୍ନତ ଜୀବାତ୍ମା ପ୍ରତି ଦୃଷ୍ଟି ପକାଇଲେ ଏହି କାରଣ ଶରୀର ଓ ତାର ପରବର୍ତ୍ତୀ 'ଅଧ୍ୟାତ୍ମ ଶରୀର' ବା ପ୍ରକୃତ ମନୁଷ୍ୟର ବଳିଷ୍ଠ ଉପସ୍ଥିତି ଭାବରେ ପ୍ରଥମେ ଆଖିରେ ପଡେ । ଏହା ଆଲୋକମୟ, ଅତି ମହିମାନ୍ୱିତ ଓ କମନୀୟ ବର୍ଣ୍ଣଯୁକ୍ତ । ଆହୁରି, ଏସବୁ ଏପରି ବର୍ଣ୍ଣଯୁକ୍ତ ଯେ ତାହା ପ୍ରକାଶ କରି ହେବ ନାହିଁ । କାରଣ ପାର୍ଥିବ ରଙ୍ଗମାଳା (ସପ୍ତରଙ୍ଗ)ରେ ତାର ପଟାନ୍ତର ନାହିଁ । ରଙ୍ଗଗୁଡ଼ିକ ଯେ କେବଳ ବିଶୁଦ୍ଧ ଓ ସୁନ୍ଦର ସେତିକି ନୁହେଁ, ନିମ୍ନତର ଲୋକର ବର୍ଣ୍ଣଗୁଡ଼ିକ ଅପେକ୍ଷା ସମ୍ପୂର୍ଣ୍ଣ ଭିନ୍ନ । ଏଗୁଡ଼ିକ ସେହି ଉଚ୍ଚତର ଲୋକର ଅତ୍ୟୁଚ୍ଚ ଗୁଣାବଳୀ ଓ ଶକ୍ତିର ପ୍ରମାଣ ଦେଇଥାଏ । ଯଦି ଆଖି କେବେ କୌଣସି ମହାତ୍ମାଙ୍କୁ ଦର୍ଶନ କରିବାର ସୁଖମୟ ସୌଭାଗ୍ୟ ଅର୍ଜନ କରିବ, ସେ ଏପରି ମହାଶକ୍ତିଶାଳୀ ଜୀବନ୍ତ ମୂର୍ତ୍ତିରେ ଦେଖା ଦେଇଥାଆନ୍ତି ଏବଂ ତାଙ୍କର ଉପସ୍ଥିତି ଦୃଷ୍ଟିରେ ପଡ଼ିବା ମାତ୍ରକେ ଉଜ୍ଜ୍ୱଳ ଗୌରବମୟ ବର୍ଣ୍ଣ ତାଙ୍କର ନିଜସ୍ୱ ଗୁଣ ଜଣାଇ ଦିଏ, ତାହାର ସୌନ୍ଦର୍ଯ୍ୟ ବର୍ଣ୍ଣନାତୀତ ଓ ଉଜ୍ଜ୍ୱଳତା କଳ୍ପନାତୀତ । ତଥାପି ସେ ଆଜି ଯାହା ହୋଇଛନ୍ତି, ତାହା ପ୍ରତ୍ୟେକ ମାନବ ସନ୍ତାନ ଭିତରେ ସମ୍ଭାବନା ରୂପେ ବିଦ୍ୟମାନ ରହିଛି ।

ଏହି ମାନବ ଦେହର ପ୍ରଭା ବିଷୟରେ ବ୍ୟାବହାରିକ ଦୃଷ୍ଟିରୁ ଗୋଟିଏ ସୁବିଧା କଥା କହିବି । ଏହି ପ୍ରଭାମୟ ବସ୍ତୁରେ ଗୋଟିଏ ଡିମ୍ବାକାର କୋଷ ଆମ ଚାରିକଡ଼ରେ ତିଆରି କରି ଆମେ ବାହାରୁ ଆଘାତ କରୁଥିବା ମାନସିକ

ତରଙ୍ଗ କବଳରୁ ନିଜକୁ ରକ୍ଷା କରିପାରିବା । ଏହି ପ୍ରଭା ବଡ଼ ତତ୍ପରତା ସହିତ ମାନସିକ ସଂବେଗର ପ୍ରତ୍ୟୁତ୍ତର କରିପାରେ ।

ଆମେ ଯଦି ବାରମ୍ବାର କଳ୍ପନା କରିବା ଯେ ଆମ ଶରୀର ପ୍ରଭାର ବାହାର ସୀମା ଘନୀଭୂତ ହୋଇ ଗୋଟିଏ କୋଷ ଆମ ଚାରିପାଖରେ ଗଠନ କରିଛି ତାହାହେଲେ ସେ ଦେହ ସେହିପରି ଏକ ରକ୍ଷା କୋଷଗଠନ କରିଥାଏ । ଏହି ଆବରଣ ବା କୋଷ କାମଲୋକର ବାୟୁମଣ୍ଡଳରେ ପୂରି ରହିଥିବା ଭାସମାନ ଭାବନା ଗୁଡ଼ିକୁ ନିଜ ଭିତରକୁ ପଶି ଆସିବାକୁ ଦିଏ ନାହିଁ । ତଦ୍ଦ୍ୱାରା ଅପରିଣତ ମନ ଉପରେ ସେମାନେ ଆସି ଯେଉଁ ବିଶୃଙ୍ଖଳ ପ୍ରଭାବ ପକାଇ ଥାଆନ୍ତେ ତହିଁରୁ ରକ୍ଷାମିଳେ । କେତେକ ଲୋକଙ୍କ ସଂସ୍ପର୍ଶରେ ଆସିଲେ ଆମର ବଳହାନୀ ହେଲାଭଳି ଆମେ ଅନୁଭବ କରୁଁ । ଏ ପ୍ରକାର ଲୋକମାନେ ତାଙ୍କ ଅଜ୍ଞାତସାରରେ ପ୍ରତିବେଶୀର ଶକ୍ତି କ୍ଷୟ କରି ଦେଇଥାଆନ୍ତି । ଯେଉଁମାନେ ଉପରୋକ୍ତ ପ୍ରକାରର ଆବରଣ ବା ପ୍ରଭା-ପ୍ରାଚୀର ରଚନାକରି ଥାଆନ୍ତି ସେମାନଙ୍କର ଏଭଳି ଶକ୍ତି କ୍ଷୟ ଘଟେନାହିଁ । ଯେଉଁମାନେ ଏଭଳି ଶକ୍ତିହୀନ ଅବସ୍ଥା ଅନୁଭବ କରନ୍ତି ସେମାନେ ଏହି ପ୍ରକାର ପ୍ରଭାର ପ୍ରାଚୀର ରଚନା କରିବା ଉଚିତ । ମନର ପ୍ରଭାବ ସୂକ୍ଷ୍ମ ପଦାର୍ଥ ଉପରେ ଏତେ ପ୍ରବଳ ଯେ ଚିନ୍ତାକରିବା ମାତ୍ରେ ଏପ୍ରକାର ପ୍ରାଚୀର ତିଆରି ହୋଇଯାଏ ।

ଆମର ଚାରି ପାଖରେ ଥିବା ଲୋକମାନଙ୍କୁ ଲକ୍ଷ୍ୟକଲେ, ସେମାନେ ପ୍ରତ୍ୟେକେ ବିଶ୍ୱର ଗୋଟିକପରେ ଗୋଟିଏ ଲୋକରେ ବାସକରି ଏବଂ ବିଭିନ୍ନ ସ୍ତରରେ କ୍ରିୟାଶୀଳ ହୋଇ ସେମାନଙ୍କର ଯଥା ଯୋଗ୍ୟ ଚେତନାର ବାହନ ଗଠନ କରି କ୍ରମବିକାଶର କେଉଁସ୍ତରରେ ଅଛନ୍ତି ତାହା ତାଙ୍କର ଦେହ ପ୍ରଭାରୁ ଜଣା ପଡ଼ିଯାଏ । ଯେଉଁଲୋକ ପ୍ରକୃତ ଜୀବନରେ ଯେତିକି ଉନ୍ନତି କରନ୍ତି ସେମାନେ ଏହି ପ୍ରଭାକୁ ସେତିକି ଉନ୍ନତ କରିଥାଆନ୍ତି । ସେ ଯେତିକି ମହତ୍ ଓ ସତ୍-ଜୀବନଯାପନ କରନ୍ତି, ଏହା ସେତିକି ଶୋଧିତ ହୋଇଥାଏ ଏବଂ ଏହା ଭିତରେ ସେତିକି ଉଚ୍ଚରୁ ଉଚ୍ଚତର ଗୁଣଗୁଡ଼ିକ ଗୁନ୍ଥି ହୋଇଥାଆନ୍ତି । ଅନ୍ୟ କେଉଁ ଜୀବନ ଦର୍ଶନ ଏହା ଅପେକ୍ଷା ଅଧିକ ଆଶାପୂର୍ଣ୍ଣ, ଅଧିକ ଶକ୍ତିପୂର୍ଣ୍ଣ ଓ ଅଧିକ ଆନନ୍ଦପୂର୍ଣ୍ଣ କ'ଣ ହୋଇ ପାରିବ ? ଆମର ଏହି ପାର୍ଥିବ ଦୃଷ୍ଟିରେ ମଣିଷ ଜଗତକୁ ଦେଖିଲେ ଆମେ ଏହାକୁ ଅଧଃ-ପତିତ, ଦୁର୍ଦ୍ଦଶା ଗ୍ରସ୍ତ ଓ ଆପାତତ ନୈରାଶ୍ୟ ବ୍ୟଞ୍ଜକ ଦେଖୁଁ, ଯାହା ରକ୍ତ ମାଂସ ଆଖିର

ଦୃଷ୍ଟିରେ ସତ । କିନ୍ତୁ ସେହି ସମାନ ମନୁଷ୍ୟ ଜଗତକୁ ଉଚ୍ଚତର ସୂକ୍ଷ୍ମ ଦୃଷ୍ଟିରେ ଦେଖିଲେ ଅନ୍ୟପ୍ରକାର ଦେଖାଯାଏ । ଆମେ ସେଥିରେ ସେହି ଶୋକ ଦୁଃଖ ଦେଖୁଁ, ସେହି ଅଧଃପତନ ଦୁର୍ଦ୍ଦଶାର ରୂପଦେଖୁଁ କିନ୍ତୁ ଜାଣିପାରୁଁ ସେସବୁ କ୍ଷଣସ୍ଥାୟୀ ସାମୟିକ । ଏସବୁ ମାନବ ଜାତିର ଶୈଶବ କାଳରୁ ରହି ଯାଇଛି ଓ ମଣିଷ ଏହାକୁ କାଳକ୍ରମେ ଅତିକ୍ରମ କରିଯିବ । ସର୍ବାପେକ୍ଷା ନୀଚ ଓ ହୀନ, ସର୍ବାପେକ୍ଷା ଅଧଃପତିତ ଓ ପାଶବିକ ନିର୍ଦ୍ଦୟ ଲୋକ ପ୍ରତି ଲକ୍ଷ୍ୟକଲେ ଆମେ ତାହାଠାରେ ମଧ୍ୟ ସ୍ୱର୍ଗୀୟ ସମ୍ଭାବନା ଦେଖିବାକୁ ପାଇବା, ଆଉ ମଧ୍ୟ ଦେଖିପାରିବା ଅନାଗତ ଭବିଷ୍ୟତରେ ସେ କଣ ହୋଇପାରିବ । ଏହି ଆଶାରବାଣୀ ବ୍ରହ୍ମବିଦ୍ୟା ପାଶ୍ଚାତ୍ୟ ଜଗତକୁ ବହନ କରି ଆଣିଛି - ଏହା ଅଜ୍ଞାନତାରୁ ସାର୍ବଜନୀନ ପ୍ରଜ୍ଞାରବାଣୀ, ଦୁଃଖ ଦୁର୍ଦ୍ଦଶାରୁ ସାର୍ବଜନୀନ ମୁକ୍ତିର ବାଣୀ, କେବଳ କଳ୍ପନାରେ ନୁହେଁ ବାସ୍ତବରେ, କେବଳ ଆଶାରେ ନୁହେଁ, ନିଶ୍ଚୟତା ସହକାରେ । ଯେଉଁମାନେ ନିଜ ଜୀବନରେ କ୍ରମବିକାଶ ଦେଖାଉଛନ୍ତି, ସତେ ଯେପରି ସେମାନେ ଏକ ନୂତନ ଆତ୍ମାନୁଭୂତି ଓ ଏହି ବାଣୀର ପୁନଃ ପ୍ରଚଳନକାରୀ ଅଟନ୍ତି । ଏହି ବାଣୀ ସବୁଠାରେ ଆରମ୍ଭ ଅବସ୍ଥାରେ ପ୍ରଥମଫଳ ଦେଉଛି । ଦିନେ ସାରାଜଗତ ଏହାର ଫଳ ଅମଳ କରିବା ଭଳି ପରିପକ୍ୱ ଅବସ୍ଥା ଆସିବ ଓ ତାହା ସଂଗ୍ରହ କରି ତାକୁ ଈଶ୍ୱର ଯେଉଁ ଉଦ୍ଦେଶ୍ୟରେ ସୃଷ୍ଟିକରିଛନ୍ତି ତାହା ସାର୍ଥକ କରିବ ।



# ମଣିଷ

ଆମେ ବର୍ତ୍ତମାନ ଅସଲ ମଣିଷର ନିଜ କଥା ଆଲୋଚନା କରିବା । ମଣିଷ ଚେତନାର ବାହନ ଗୁଡ଼ିକ ବିଷୟରେ ଚର୍ଚ୍ଚା ନ କରି ସେ ବାହନଗୁଡ଼ିକ ଭିତରେ ଚେତନା କିପରି କାର୍ଯ୍ୟ କରୁଛି, କେବଳ ଶରୀରଗୁଡ଼ିକୁ ନ ଦେଖି ତା ଭିତରେ ଯେଉଁ ସତ୍ତା କାମ କରୁଛି ତା ବିଷୟରେ ଆଲୋଚନା କରିବା । 'ମଣିଷ' ଅର୍ଥ ମୋ ବିଚାରରେ ଏକ ନିରବଚ୍ଛିନ୍ନ ବ୍ୟକ୍ତି ସତ୍ତା ଯାହାକି ଗୋଟିଏ ଜୀବନ ପରେ ଅନ୍ୟ ଗୋଟିଏ ଜୀବନକୁ ଗତି କରେ; ବାରମ୍ବାର ଶରୀରମାନଙ୍କ ଭିତରକୁ ଆସେ ଏବଂ ସେମାନଙ୍କୁ ଛାଡ଼ି ଚାଲିଯାଏ । କାଳକ୍ରମେ ଅତି ମନ୍ଥର ଗତିରେ ଉନ୍ନତି ଲାଭ କରେ; ଅଭିଜ୍ଞତା ଅର୍ଜନ କରେ ଓ ତାର ପରିପାକ ଫଳରେ ବିକାଶ ଲାଭକରେ ଏବଂ ପୂର୍ବ ପରିଚ୍ଛେଦରେ କୁହାଯାଇଥିବା ଉଚ୍ଚମାନସ ସ୍ତରରେ ଅବସ୍ଥାନ କରେ । ଆମ ଆଲୋଚନାର ବିଷୟ ଯେଉଁ ମଣିଷ ସେ ଆମ ସୁପରିଚିତ ପାର୍ଥିବ ଲୋକ (ଭୂଲୋକ), କାମ ଲୋକ ଓ ମାନସ ଲୋକ, ଏହିପରି ତିନିଲୋକରେ କ୍ରିୟାଶୀଳ ରହିଥାଏ ।

ମଣିଷ ପାର୍ଥିବ ଜଗତରେ ଆତ୍ମଚେତନା ବିକାଶ କରି ଅଭିଜ୍ଞତା ଅର୍ଜ୍ଜନ କରିବା ଆରମ୍ଭକରେ । ଯାହାକୁ ଆମେ 'ଜାଗ୍ରତ ଚେତନା' କହୁଁ ତାହା ଏହି ସ୍ତରରେ ହିଁ ଦେଖାଦିଏ । ଏହି ଚେତନା ସହିତ ଆମେ ସମସ୍ତେ ସୁପରିଚିତ । ଏହା ମସ୍ତିଷ୍କ ଓ ସ୍ନାୟୁ ମଣ୍ଡଳ ସାହାଯ୍ୟରେ କାର୍ଯ୍ୟକରେ । ଏହା ଦ୍ୱାରା ସାଧାରଣ ଭାବରେ ଆମେ ଯୁକ୍ତି ସମ୍ମତ ବିଚାର କରି ପାରନ୍ତି । ଏହା ସାହାଯ୍ୟରେ ଆମେ ଏ ଜନ୍ମର ସମସ୍ତ ଅତୀତ ଘଟଣା ସ୍ମରଣ ରଖୁଁ ଏବଂ ଜୀବନରେ ସମସ୍ତ ଘଟଣା ସମ୍ପର୍କରେ ସିଦ୍ଧାନ୍ତ ଗ୍ରହଣ କରୁଁ । ଆମେ ଯାହାକୁ ମାନସିକ ବୃତ୍ତି ବୋଲି କହୁଛୁଁ ତାହା ମଣିଷର ପୂର୍ବବର୍ତ୍ତୀ ଜୀବନ ଯାତ୍ରାକାଳରେ କରିଥିବା କର୍ଯ୍ୟର ଫଳ । ମଣିଷ ଜନ୍ମ ଜନ୍ମାନ୍ତର ଘେନି ଯେତିକି କ୍ରମୋନ୍ନତି କରୁଥାଏ, ତାହାର ବ୍ୟକ୍ତି ସତ୍ତା ସେତିକି ବିକାଶ ଲାଭ କରୁଥାଏ । ତାର ଆତ୍ମ ଚେତନା ଏଠାରେ ସେତିକି ଅଧିକରୁ ଅଧିକ ସ୍ପଷ୍ଟ, ଅଧିକରୁ ଅଧିକ କ୍ରିୟାଶୀଳ ଓ ଅଧିକରୁ ଅଧିକ ପ୍ରାଣବନ୍ତ ହୋଇଉଠେ ।

ଯଦି ଆମେ ଜଣେ ଅତି ଅନୁନ୍ନତ ମଣିଷକୁ ଅଧ୍ୟୟନ କରିବା, ଦେଖିବାକୁ ପାଇବା ତାର ଆତ୍ମ ଚେତନା ଜନିତ ମାନସିକ କ୍ରିୟାର ମାନ ଅତି ନିମ୍ନ ସ୍ତରର ଓ ପରିମାଣ ଅତି ଅଳ୍ପ । ସେ ପାର୍ଥିବ ଶରୀରରେ ସ୍ଥୂଳ ଓ ଇଥରୀୟ

ମସ୍ତିଷ୍କ ଜରିଆରେ କାର୍ଯ୍ୟ କରୁଛି । ତାହାର ଦୃଶ୍ୟ ଓ ଅଦୃଶ୍ୟ ସ୍ନାୟୁ ମଣ୍ଡଳରେ ଅନବରତ କାର୍ଯ୍ୟ ଚାଲିଛି କିନ୍ତୁ ତାହା ଅତି ବିଶୃଙ୍ଖଳ । ଏଥିରେ ବିଚାର ବୁଦ୍ଧିର ବା ମାନସିକ କୋମଳତାର ସ୍ପର୍ଶ ପର୍ଯ୍ୟନ୍ତ ନାହିଁ କହିଲେ ଚଳେ । ଏଥିରେ ମାନସିକ କ୍ରିୟା କିଛି ପରିମାଣରେ ଅଛି ସତ, କିନ୍ତୁ ତାହା ଶିଶୁ ସୁଲଭ ବା ଅତି ଅପରିପକ୍ୱ । ସେ ଅତି ଛୋଟ ଛୋଟ ବିଷୟରେ ବ୍ୟସ୍ତ ରହେ । ସାମାନ୍ୟ ଘଟଣାରେ ଖୁସି ହୋଇଯାଏ ଏବଂ ନଗଣ୍ୟ ଭୋଗ୍ୟ ବସ୍ତୁଗୁଡ଼ିକ ଏହାର ଦୃଷ୍ଟି ବେଶି ଆକର୍ଷଣ କରିଥାଏ । ଚଳ ପ୍ରଚଳ କରୁଥିବା ଜିନିଷଗୁଡ଼ିକରେ ସେ ଅଧିକ ଆଗ୍ରହ ଦେଖାଏ । ଝରକା ପାଖରେ ବସି କର୍ମ ଚଞ୍ଚଳ ରାସ୍ତାକୁ ଚାହିଁ ରହିବାକୁ, ଯାତାୟତ କରୁଥିବା ବ୍ୟକ୍ତି ତଥା ଯାନବାହନକୁ ବସି ବସି ଦେଖିବାକୁ ଭଲ ପାଏ ଏବଂ ସେମାନଙ୍କ ପ୍ରତି ମନ୍ତବ୍ୟ ପ୍ରକାଶ କରେ । ଯଦି ଜଣେ ସୁନ୍ଦର ପୋଷାକ ପିନ୍ଧିଥିବା ଲୋକ ହଠାତ୍ ତଳେ ପଡିଯାଏ କିମ୍ବା ଚାଲିଯାଉଥିବା ଗାଡ଼ି ଚକରୁ କାଦୁଅ ଛିଡିକି ଆସି, କାହା ଉପରେ ପଡ଼ି ପୋଷାକ ଖରାପ କରିପକାଏ, ସେ ଆନନ୍ଦରେ ବିଭୋର ହୋଇଯାଏ । ତାର ନିଜ ମନୋନିବେଶ କରିବା ନିମନ୍ତେ ତା ଭିତରେ ନିଜର ବୋଲି କିଛି ସମ୍ବଳ ନ ଥାଏ । ସେଥିପାଇଁ ନିଜର ଅସ୍ତିତ୍ୱ ଅନୁଭବ କରିବା ପାଇଁ ସେ ସର୍ବଦା ବାହାରକୁ ଦୌଡୁଥାଏ ।

ମାନସିକ ବିକାଶର ନିମ୍ନ ସ୍ତରରେ ଲୋକମାନଙ୍କର ଗୋଟିଏ ପ୍ରଧାନ ଲକ୍ଷଣ ହେଲା, ସେ ତାର ପାର୍ଥିବ (ସ୍ଥୂଳ ଓ ଇଥରୀୟ) ଶରୀରରେ କାର୍ଯ୍ୟକରେ ଏବଂ ଚେତନାର ବାହନ ରୂପେ ଏହାକୁ ସୁଶୃଙ୍ଖଳିତ କରି, ସର୍ବଦା ପ୍ରଗାଢ ଇନ୍ଦ୍ରିୟାନୁଭୂତି ଖୋଜେ । ସେ ଯାହା ସବୁ ଅନୁଭବ କରୁଛି ସେ ବିଷୟରେ ନିଶ୍ଚିତଭାବରେ ତାର ଅନୁଭବ ହେବା ସେ ଚାହିଁଥାଏ । ସେ ସେହି ଗାଢ଼ ଓ ବିଶଦ ଇନ୍ଦ୍ରିୟାନୁଭୂତିରୁ ହିଁ ଏକ ବସ୍ତୁର ଅନ୍ୟ ବସ୍ତୁଠାରୁ ଥିବା ପାର୍ଥକ୍ୟ ଜାଣିପାରେ । ଏହା ଯଦିଓ ଅତି ପ୍ରାରମ୍ଭିକ ଅବସ୍ଥାର କଥା ତଥାପି ବିକାଶ ଲାଭପାଇଁ ଅତି ଦରକାରୀ । କାରଣ ଏହାର ଅଭାବରେ ସବୁ ଦିନ ପାଇଁ ତା ଶରୀର ଭିତରର ପ୍ରକ୍ରିୟା ଓ ବାହାରର ପ୍ରକ୍ରିୟା ସମ୍ବନ୍ଧରେ ତା ଜ୍ଞାନ ଅସ୍ପଷ୍ଟ ରହିଯିବ । ସେ ବିଷୟ ଓ ବିଷୟାନୁଭୂତି ମଧ୍ୟରେ ତଥା କେଉଁ ବସ୍ତୁ କି ପ୍ରକାର ପ୍ରଭାବ ପକାଉଛି ଏହି ପ୍ରଭାବଦ୍ୱାରା କେଉଁ ପ୍ରକାର ଇନ୍ଦ୍ରିୟାନୁଭୂତି ଲାଭ ହେଉଛି, ଏ ସମସ୍ତ ଭିତରେ ଥିବା ପାର୍ଥକ୍ୟ ନିର୍ଣ୍ଣୟ କରି ଆତ୍ମ ଓ ଅନାତ୍ମ ବସ୍ତୁ ବିଷୟରେ ବର୍ଣ୍ଣ ପରିଚୟ ଆରମ୍ଭ କରେ । ଏମାନଙ୍କ ମଧ୍ୟରେ ନିମ୍ନତମ ସ୍ତରରେ ଥିବା ବ୍ୟକ୍ତିମାନଙ୍କୁ ରାସ୍ତା ଛକରେ ଠୁଳ ହୋଇ, ଅଳସୁଆମି କରି,

କାନ୍ଥକୁ ବା ଖମ୍ବକୁ ଆଉଜି ଠିଆ ହୋଇଥିବାର ଦେଖାଯାଏ । ସେମାନଙ୍କ ମୁହଁରୁ ଉଦ୍‌ଗାର କଲାଭଳି ପଦେ ପଦେ ମନ୍ତବ୍ୟ ବାହାରୁ ଥାଏ ବା କେତେବେଳେ ଅକାରଣ ଅଟ୍ଟହାସ କରି ଉଠିବା ଶୁଣାଯାଏ । ତାଙ୍କ ମସ୍ତିଷ୍କକୁ ଦେଖିବା ଭଳି ଦକ୍ଷତା ଥିବା ଯେକୌଣସି ଲୋକ ଦେଖିଲେ ଜାଣିପାରିବ ଯେ ରାସ୍ତାରେ ଯାତାୟାତ କରୁଥିବା ବସ୍ତୁରୁ ସେମାନେ ଗ୍ରହଣ କରୁଥିବା ଅନୁଭୂତି ଅତି ଅସ୍ପଷ୍ଟ । ଏହି ଅନୁଭୂତିଓ ପୂର୍ବରୁ ଗ୍ରହଣ କରିଥିବା ଅନ୍ୟ ଅନୁଭୂତିମାନଙ୍କ ମଧ୍ୟରେ ସଂଯୋଗ ସୂତ୍ର ଅତି କ୍ଷୀଣ । ଏହି ଅଭିଜ୍ଞତାର ଛାପାଗୁଡ଼ିକ ଗୋଟିଏ ସୁସଜ୍ଜିତ ମୋଜାଇକ ପରି ନ ହୋଇ ଗୋଟିଏ ବାଲି ଗରଡା ଗଦାପରି ବିଶୃଙ୍ଖଳ ହୋଇଥାଏ ।

ସ୍ଥୂଳ ଓ ଇଥରୀୟ ମସ୍ତିଷ୍କ କିପରି ଚେତନାର ବାହନ ହୁଅନ୍ତି, ଏ ବିଷୟରେ ବୁଝିବାକୁ ହେଲେ ଆମକୁ ''ଅହଂକାର'' ବା ''ମୁଁ ତ୍ୱ'' ବିକାଶର ଆରମ୍ଭ ଅବସ୍ଥା ପର୍ଯ୍ୟନ୍ତ ଫେରିଯିବାକୁ ପଡ଼ିବ । ଏହା ଏକ ଅବସ୍ଥା ଯାହା ଆମ ଚାରିପଟେ ଥିବା ଇତର ପ୍ରାଣୀମାନଙ୍କ ମଧ୍ୟରେ ଦେଖାଯାଏ । ବାହାର ବସ୍ତୁଗୁଡ଼ିକର ପ୍ରକ୍ରିୟାରେ ସୃଷ୍ଟି ହେଉଥିବା ସ୍ପନ୍ଦନ ମସ୍ତିଷ୍କରେ ଉପସ୍ଥିତ ହେବା ପରେ ସେଗୁଡ଼ିକୁ ମସ୍ତିଷ୍କ କାମନା ଶରୀରକୁ ପଠାଇ ଦିଏ ଏବଂ ସ୍ପନ୍ଦନ ଗୁଡ଼ିକ ସୃଷ୍ଟିକରୁ ଥିବା ବସ୍ତୁ ସହିତ ସମ୍ବେଦନାକୁ ସମ୍ପୃକ୍ତ କରିବା ପୂର୍ବରୁ ଚେତନା ସେଗୁଡ଼ିକୁ ସମ୍ବେଦନା ଭାବରେ ଗ୍ରହଣ କରିଥାଏ । କାରଣ, ବସ୍ତୁ ସହିତ ସମ୍ପର୍କ ସ୍ଥାପନ କରିବା ଏକ ନିର୍ଦ୍ଦିଷ୍ଟ ମାନସିକ ପ୍ରକିୟା ଯାହାର ନାମ ମାନସ ଉପଲବ୍ଧି (perception) । ଯେତେବେଳେ ଏହି ଉପଲବ୍ଧି ଆରମ୍ଭ ହୁଏ ସେତେବେଳେ ଚେତନା ପାର୍ଥିବ ଓ ଇଥରୀୟ ମସ୍ତିଷ୍କକୁ ନିଜର ବାହନ ରୂପେ ବ୍ୟବହାର କରୁଥାଏ ଏବଂ ଏହା ସାହାଯ୍ୟରେ ବାହାର ଜଗତର ଜ୍ଞାନ ସଂଗ୍ରହ କରେ । ମନୁଷ୍ୟ ଜାତିର ଏ ପ୍ରାରମ୍ଭିକ ଅବସ୍ଥା ଅବଶ୍ୟ ବହୁକାଳରୁ ଅତୀତ ହୋଇଗଲାଣି । କିନ୍ତୁ ପୁନର୍ଜନ୍ମ ପରେ ଯେତେବେଳେ ଚେତନା ଗୋଟିଏ ନୂତନ ମସ୍ତିଷ୍କକୁ ଅଧିକାର ଭିତରେ ପାଏ । ଏହାର ସାମୟିକ ପୁନରାବୃତ୍ତି ଘଟିଥାଏ । ଧାଇମାମାନେ ଏହାକୁ ଛୁଆ ଚିହ୍ନୁଛି ବୋଲି କହନ୍ତି । ଏହି ଅବସ୍ଥାରେ ଛୁଆ ତାର ନୂତନ ଆବରଣ ବା ବାହନରେ ବାହାର ବସ୍ତୁଦ୍ୱାରା ସଂଚାରିତ ହେଉଥିବା କୌଣସି ପ୍ରଭାବକୁ ସ୍ୱତଃ ଜାତ ସମ୍ବେଦନା ସହ ସଂଲଗ୍ନକରି ବସ୍ତୁର ଇନ୍ଦ୍ରିୟ ଉପଲବ୍ଧି ଚେଷ୍ଟା କରେ ।

କିଛି କାଳ ପରେ ଗୋଟିଏ ବସ୍ତୁର ଚିତ୍ର ଚେତନାରେ ଉପସ୍ଥାପନା କରିବା ପାଇଁ ସେହି ବସ୍ତୁର ତତ୍କାଳୀନ ଉପଲବ୍ଧି ଆଉ ଦରକାର ହୁଏ ନାହିଁ ।

ଚେତନା ବସ୍ତୁର ରୂପକୁ ଇନ୍ଦ୍ରିୟର ସମ୍ପର୍କ ବିନା ଉପସ୍ଥାପନ କରିବାକୁ ସକ୍ଷମ ହୁଏ । ଏହି ରୂପେ ସ୍ମୃତି ସାହାଯ୍ୟରେ ଅବଗତିର ନାମ ଧାରଣା (idea) ଅଟେ । ଏହିପରି ଗୋଟିଏ ଗୋଟିଏ ଧାରଣା ବା ମାନସିକ ପ୍ରତିକୃତି ବାହାର ଜଗତରୁ ସଂଗ୍ରହ କରି ଚେତନା ତା ଭଣ୍ଡାରକୁ ପୂର୍ଣ୍ଣକରେ ଓ ସେମାନଙ୍କୁ ଘେନି ତାର କାମ ଆରମ୍ଭ କରେ । ତାର ପ୍ରଥମ କାମ ହେଲା ଏ ଧାରଣାଗୁଡ଼ିକୁ ସଜାଡ଼ିବା, ଯେଉଁଥିରୁ କି ବିଚାରର ଆରମ୍ଭ । ଗୋଟିଏ ଧାରଣାକୁ ଅନ୍ୟ ଧାରଣାମାନଙ୍କ ସହିତ ତୁଳନା କରିବା ଦ୍ୱାରା ବିଚାର ଆରମ୍ଭ ହୁଏ । ସେମାନଙ୍କ ମଧ୍ୟରୁ ଦୁଇ ବା ତତୋଧିକ ଘଟଣାର ସମସାମୟିକତା ବା ପୂର୍ବାପରତା ଓ ସେମାନଙ୍କ ଘଟିବା କ୍ରମକୁ ବାରମ୍ବାର ଲକ୍ଷ୍ୟ କରି ସେମାନଙ୍କ ଭିତରେ ସମ୍ପର୍କ ନିର୍ଣ୍ଣୟ କରାଯାଇଥାଏ । ଏହି ପ୍ରକ୍ରିୟାରେ ଚେତନା ନିଜ ଭିତରେ ଅନୁଭୂତି ଲବ୍ଧ ଧାରଣା ସମୂହକୁ ନିଜ ଭିତରକୁ ଟାଣି ନିଏ ଏବଂ ପୁଣି ଯେତେବେଳେ ସେ ବସ୍ତୁ ସମ୍ପର୍କରେ ଆସେ ସେ ତହିଁରେ ନିଜର କିଛି ଯୋଗ କରି ପରିଣାମ ବିଚାରପୂର୍ବକ ଗୋଟିଏ ସହିତ ଅନ୍ୟଟିର କାର୍ଯ୍ୟ କାରଣ ସମ୍ପର୍କ ନିରୂପଣ କରେ । ସେ ଥରେ ଦୁଇଟି ଘଟଣା ଭିତରେ ଗୋଟିଏ ସମ୍ବନ୍ଧ ନିରୂପଣକରି ଦେଲେ ଭବିଷ୍ୟତରେ ସେ ସମ୍ପର୍କରେ କଣ ଘଟିବ ତାହା ମଧ୍ୟ କହିପାରେ । ସେଥିପାଇଁ 'କାରଣ' ବୋଲି ନିରୂପିତ ଘଟଣା ଦେଖା ଦେଲେ 'କାର୍ଯ୍ୟ' (ଫଳ) ରୂପେ ନିରୂପିତ ଘଟଣା ତାର ଅନୁସରଣ କରିପାରେ ବୋଲି ସମ୍ଭାବନା କରିପାରେ । ପୁଣି ଚେତନା ଧାରଣାଗୁଡ଼ିକୁ ତୁଳନା କରି ଦେଖେ ସେଥିରୁ କେତେ ଗୁଡ଼ିକର ପରସ୍ପର ସହିତ ଏକ ବା ତତୋଽଧିକ ମୌଳିକ ଲକ୍ଷଣରେ ସାମ୍ୟ ରହିଛି ଓ ଅନ୍ୟଗୁଡ଼ିକଠାରୁ ପାର୍ଥକ୍ୟ ରହିଛି । ସେତେବେଳେ ସେ ଏହି ସମାନ ସ୍ୱଭାବ ଯୁକ୍ତ ଧାରଣାଗୁଡ଼ିକୁ ଗୋଟିଏ ଶ୍ରେଣୀର ବୈଶିଷ୍ଟ୍ୟ ରୂପେ ଗ୍ରହଣ କରେ ଏବଂ ତତ୍‌ପରେ ଯେତେ ବସ୍ତୁରେ ଏହି ବୈଶିଷ୍ଟ୍ୟ ଦେଖେ ବା ଏହିପରି ବୈଶିଷ୍ଟ୍ୟଯୁକ୍ତ ଯଦି କୌଣସି ଏକ ନୂତନ ବସ୍ତୁପାଇଯାଏ ତାକୁ ଏହି ଶ୍ରେଣୀ ଭୁକ୍ତକରିଥାଏ । ଏହିପରି ଭାବରେ ସେ କ୍ରମେ କ୍ରମେ ବିଶୃଙ୍ଖଳ ଧାରଣା ଭିତରେ ଗୋଟିଏ ସୁନିୟନ୍ତ୍ରିତ ଚିନ୍ତା ସମ୍ଭାର ସୃଷ୍ଟି କରେ । ଏହି ଚିନ୍ତା ସାହାଯ୍ୟରେ ସେ ତାର ମାନସିକ ଜୀବନ ଆରମ୍ଭକରେ ଏବଂ ପ୍ରକୃତିରେ ନିୟମିତ ଘଟଣାର କ୍ରମ ଓ ପ୍ରକାରସବୁ ଦେଖି ନିୟମମାନ ନିର୍ଦ୍ଧାରଣ କରେ । ଚେତନା ଏହି ସବୁ କାର୍ଯ୍ୟ ପାର୍ଥିବ ମସ୍ତିଷ୍କଦ୍ୱାରା କିମ୍ବା ତା ଜରିଆରେ ସାଧନ କରିଥାଏ । କିନ୍ତୁ ଏହି ସାଧାରଣ କାର୍ଯ୍ୟ ଭିତରେ ମଧ୍ୟ ମସ୍ତିଷ୍କ ଯୋଗାଉ ନ ଥିବା କେତେକ ବିଷୟର ଅସ୍ତିତ୍ୱ ଦେଖିବାକୁ ମିଳେ । ମସ୍ତିଷ୍କ କେବଳ ସ୍ପନ୍ଦନ

ଗ୍ରହଣ କରେ । ଚେତନା କାମନା ଶରୀର ଭିତରେ କ୍ରିୟାଶୀଳ ହୋଇ ଇନ୍ଦ୍ରିୟାନୁଭୂତିରେ ପରିଣତ କରେ ଏବଂ ମାନସ ଶରୀର ଭିତରେ ଇନ୍ଦ୍ରିୟାନୁଭୂତିକୁ ମାନସ ଉପଲବ୍ଧିରେ ପରିଣତ କରେ ଓ ବିଶୃଙ୍ଖଳତାକୁ ସୁଶୃଙ୍ଖଳ କରି ଗଢ଼ିବାର ସମସ୍ତ କ୍ରିୟା ସମ୍ପାଦନ କରେ । ପୁଣି ଚେତନା ଏହିପରି କାର୍ଯ୍ୟ କରୁଥିବା ଅବସ୍ଥାରେ ଉପରୁ ପ୍ରାପ୍ତ ଚିନ୍ତାଦ୍ୱାରା ଦୀପ୍ତ ହୁଏ । ସେଗୁଡ଼ିକ ଇହଲୋକରେ ମିଳୁଥିବା ବସ୍ତୁରୁ ଗଠିତ ଧାରଣା ନୁହେଁ । ବାସ୍ତବରେ ବିଶ୍ୱମାନସରୁ ସିଧାସଳଖ ପ୍ରତିଫଳିତ ହେଉଥିବା ଧାରଣାଦ୍ୱାରା ଆଲୋକିତ ହୁଏ । ମହାନ 'ଚିନ୍ତାର ନିୟମ ଗୁଡ଼ିକ' ସମସ୍ତ ଚିନ୍ତନ କ୍ରିୟାକୁ ନିୟନ୍ତ୍ରିତ କରେ ଏବଂ ଚିନ୍ତା କରିବାର ପ୍ରକ୍ରିୟାରୁ ହିଁ ଜଣାପଡ଼େ ଏହାପୂର୍ବରୁ ଥିଲା, କାରଣ ସେହି ସେହି ନିୟମମାନଙ୍କ ବଳରେ ଏହା ଘଟେ, ସେମାନଙ୍କ ଅଧୀନରେ ଘଟେ ଏବଂ ସେ ନିୟମମାନଙ୍କ ବିନା ଏହା ସବୁ ଘଟିବା ସମ୍ଭବ ହୁଏ ନାହିଁ ।

କହିବା ବାହୁଲ୍ୟ ଯେ ପାର୍ଥିବ ବାହନରେ କ୍ରିୟାଶୀଳ ହେବା ପାଇଁ ଚେତନାର ପ୍ରଥମ ପ୍ରଥମ ଚେଷ୍ଟାଗୁଡ଼ିକ ବହୁଭ୍ରମ ଓ ପ୍ରମାଦ ପୂର୍ଣ୍ଣ ହୋଇଥାଏ । । କାରଣ, ଏକ ଦିଗରେ ଧାରଣା ଅସମ୍ପୂର୍ଣ୍ଣ ଥାଏ ଓ ଅନ୍ୟ ଦିଗରେ ସିଦ୍ଧାନ୍ତ ଭ୍ରମାତ୍ମକ ହୋଇଥାଏ । ତରବରରେ ସିଦ୍ଧାନ୍ତ ଗ୍ରହଣ କରି ନେବା, ସ୍ୱଳ୍ପ ଅଭିଜ୍ଞତା ଉପରେ ନିର୍ଭର କରି ସାଧାରଣ ନିୟମ ନିର୍ଦ୍ଧାରଣ କରିବା ଯୋଗୁଁ ଅଧିକାଂଶ ସିଦ୍ଧାନ୍ତ ପ୍ରମାଦପୂର୍ଣ୍ଣ ହୋଇଥାଏ । ତେଣୁ ସେ ଚିନ୍ତନକାରୀ ବୃତ୍ତିକୁ ସଂଯତ କରିବା ପାଇଁ, ବାରମ୍ବାର ଘଟୁଥିବା ଭ୍ରମରୁ ନିଷ୍କୃତି ପାଇବା ପାଇଁ ତର୍କଶାସ୍ତ୍ରର ସୂତ୍ର ବାନ୍ଧେ । ସବୁ ସତ୍ତ୍ୱେ ଯେତେ ଅପୂର୍ଣ୍ଣତା ଥିଲେ ସୁଦ୍ଧା, ଗୋଟିକରୁ ଅନ୍ୟ ଗୋଟିଏ ବିଷୟ ବିଚାର କରିବା ପ୍ରଚେଷ୍ଟା ମନୁଷ୍ୟର ଆତ୍ମବିକାଶର ସୁସ୍ପଷ୍ଟ ଚିହ୍ନ । କାରଣ, ଏହା ଦେଖାଇ ଦିଏ ଯେ ମଣିଷ ବାହାରୁ ସଂଗ୍ରହ କରି ଆଣିଥିବା ସମ୍ବାଦ ସଙ୍ଗରେ ନିଜର କିଛି ଯୋଗ କରୁଛି । ଏପରି ସଂଗ୍ରହ କରୁଥିବା ବସ୍ତୁ ସମ୍ପର୍କରେ ବିଚାରର ପ୍ରଭାବ ମଣିଷର ସ୍ଥୂଳ ଶରୀର ଉପରେ ପଡ଼ିଥାଏ । ମନ ଯେତେବେଳେ ଦୁଇଟି ସମ୍ବେଦନକୁ ଏକତ୍ର ସଂଯୋଗ କରେ, ସେ ମସ୍ତିଷ୍କରେ ସେହି ସେହି ସମ୍ପର୍କୀୟ ସ୍ପନ୍ଦନ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ସେହି ପ୍ରକାର ସମ୍ବେଦନ ଜାଗ୍ରତ କରୁଥିବା ସ୍ପନ୍ଦନ ଧାରା ସହିତ ମଧ୍ୟ ସଂଯୁକ୍ତ କରେ । କାରଣ, ମାନସ ଶରୀର ଯେତେବେଳେ କ୍ରିୟାଶୀଳ ହୁଏ ତାହା କାମନା ଶରୀର ଉପରେ କାର୍ଯ୍ୟ କରେ ଏବଂ କାମନା ଶରୀର

ଇଥରୀୟ ଶରୀର ତଥା ସ୍ଥୂଳ ଶରୀର ଉପରେ କାର୍ଯ୍ୟ କରିଥାଏ । ଏହା ଦ୍ୱାରା ସ୍ଥୂଳ ଶରୀରର ସ୍ନାୟବିକ ବସ୍ତୁ କଣା ଉକ୍ତ ଶରୀରମାନଙ୍କ ଦ୍ୱାରା ପ୍ରେରିତ ସଂବେଗରେ ସ୍ପନ୍ଦିତ ହୁଏ । ଏହି କ୍ରିୟା ବୈଦ୍ୟୁତିକ ପ୍ରବାହର ରୂପ ନିଏ ଏବଂ ଚୁମ୍ବକୀୟ ସ୍ରୋତ ଅଣୁରୁ ଅଣୁମାଳା ମଧ୍ୟରେ ସଂଚାରିତ ହୋଇ ଜଟିଳ ଆନ୍ତଃ ସମ୍ପର୍କ ସୃଷ୍ଟି କରେ । ଏପରି ସଂଚାର ଏକ ପ୍ରକାର ପଥ ନିର୍ମାଣ କରେ, ଆମେ ତାକୁ ସ୍ନାୟବିକ ପଥ କହିପାରିବା । ଏପରି ସ୍ନାୟବିକ ପଥରେ ସଂଚାରିତ ଚୁମ୍ବକୀୟ ସ୍ରୋତ ମାଧ୍ୟମରେ ଚାଳିତ ସଂବେଗ ଅପେକ୍ଷା ଅନ୍ୟ ଏକ ସ୍ରୋତ ଅଧିକ ସହଜରେ ଗତି କରିପାରେ, ଧରି ନିଆଯାଉ ଏହା ଏକ ପ୍ରତିକୂଳ ସ୍ରୋତ । ଯଦି ସ୍ପନ୍ଦନ ସହ ସଂପୃକ୍ତ ଗୋଟିଏ ଅଣୁ ସମଷ୍ଟି ଯାହା ଚେତନା ସହ ସମ୍ପୃକ୍ତ ଥିଲା ତାହାଦ୍ୱାରା ପୁନରାୟ କ୍ରିୟାଶୀଳ ହୋଇ ପୂର୍ବ ଧାରଣାର ପୁନରାବୃତ୍ତି କରାଏ, ତେବେ ସେଠାରେ ଘଟିଯିବା ଏହି ବ୍ୟତିକ୍ରମ ଧାରା ତତ୍‌କାଳ ଏପରି ପଥରେ ଗତି କରି ପୂର୍ବରୁ ସଂପୃକ୍ତ ଏକାଧିକ ଅଣୁ ସମଷ୍ଟି ମଧ୍ୟରେ ସଂଚାରିତ ହୋଇ ସେଗୁଡ଼ିକୁ କ୍ରିୟାଶୀଳ କରାଏ ଏବଂ ସେମାନେ ଯେଉଁ ସ୍ପନ୍ଦନ ସୃଷ୍ଟି କରନ୍ତି ତାହା ମନକୁ ପଠାଇ ଦିଅନ୍ତି । ତାହା ସ୍ୱଭାବିକ ପରିବର୍ତ୍ତନ ପରେ ଆନୁସଙ୍ଗିକ ଧାରଣା (associated idea) ରୂପେ ଦେଖାଦିଏ । ଏପରି ଆନୁସଙ୍ଗିକ ଧାରଣାର ବଡ଼ ଗୁରୁତ୍ୱ ରହିଛି । ଅତି ଗମ୍ଭୀର ଓ ପବିତ୍ର ଚିନ୍ତା ଧାରା ସହିତ ଅତି ନିର୍ବୋଧ ବା ହାସ୍ୟାସ୍ପଦ ଧାରଣା ଲାଗି ରହିଲେ ମସ୍ତିଷ୍କର ଏହି ପ୍ରକ୍ରିୟା ବଡ଼ ଅସୁବିଧା ସୃଷ୍ଟି କରେ । ଚେତନା ପବିତ୍ର ଚିନ୍ତାଟି ଉପରେ ଧ୍ୟାନ କଲାବେଳେ ହାସ୍ୟାସ୍ପଦ ଆନୁସଙ୍ଗିକ ଧାରଣାଟି ଆସି ଅତି ବିରକ୍ତିକର ଅବସ୍ଥାରେ ପକାଇ ଦିଏ; ସେତେବେଳେ ଏପରି ଧାରଣାର ତାତ୍ପର୍ଯ୍ୟ ଠିକ୍ ବୁଝାପଡ଼େ । ଚେତନା ପବିତ୍ର ଓ ଗମ୍ଭୀର ଚିନ୍ତାଟିକୁ ଆବାହନ କରିଥାଏ ସେଥିରେ ମଗ୍ନ ରହିବା ପାଇଁ କିନ୍ତୁ ଚେତନାର ଇଚ୍ଛା ବିରୁଦ୍ଧରେ, ମସ୍ତିଷ୍କ ତାର ସ୍ୱୟଂ କ୍ରିୟ ଯାନ୍ତ୍ରିକ ପ୍ରକିୟା ବଳରେ ତା ଭଣ୍ଡାରରୁ ଗୁପ୍ତ ଦୁଆର ବାଟେ ପଠାଇ ଦେଇଥିବା କୌତୁକପ୍ରଦ ଚିତ୍ରଟି ତା ସହିତ ଉଙ୍କି ମାରି ସମସ୍ତ ଗମ୍ଭୀରତା ତଥା ପବିତ୍ରତାକୁ ନଷ୍ଟ କରିଦିଏ । ଏହି ଆନୁସଙ୍ଗିକ ଧାରଣାର ତାତ୍ପର୍ଯ୍ୟ ବୁଝି ବିଜ୍ଞ ଲୋକମାନେ ପବିତ୍ର ବସ୍ତୁ ସମ୍ପର୍କରେ ସାବଧାନତା ଅବଲମ୍ବନ କରିବା ପାଇଁ କହି ଥାଆନ୍ତି; ଯେପରି ପବିତ୍ର ଚିନ୍ତା ସହିତ କୌଣସି ପ୍ରକାର ନିର୍ବୋଧ ବା ରୁଚି ଗର୍ହିତ ଧାରଣା ସଂଯୁକ୍ତ ହୋଇନପାରେ ଏବଂ ଚେତନାରେ ତାର ସ୍ୱତଃ ପୁନରାବୃତ୍ତି ନ ଘଟେ । ଏ ସମ୍ପର୍କରେ ଜଣେ ମହାନ ଇହୁଦି ଗୁରୁଙ୍କର ଉପାଦେୟ ଉପଦେଶଟି ହେଉଛି-

''ଯାହା ପବିତ୍ର ତାହା କୁକ୍କୁରକୁ ଦିଅ ନାହିଁ, କିମ୍ବା
ତୁମର ମୁକ୍ତା ଗୁଡ଼ିକୁ ଘୁଷୁରି ଆଗରେ ପକାଅ ନାହିଁ ।''

ମନୁଷ୍ୟଠାରେ ଆଉ ଗୋଟିଏ ଉନ୍ନତିର ସ୍ତର ଦେଖାଦିଏ । ଯେତେବେଳେ ସେ ବାହାରୁ ପାଉଥିବା ସଂବେଗ ଉପରେ ନିର୍ଭର ନ କରି ନିଜର ଅନ୍ତର ଭିତରେ ସ୍ଥିର କରୁଥିବା ସିଦ୍ଧାନ୍ତ ଅନୁଯାୟୀ ନିଜର ଆଚରଣକୁ ନିୟନ୍ତ୍ରିତ କରେ । ସେତେବେଳେ ସେ ତାର ସଞ୍ଚିତ ଅଭିଜ୍ଞତା ବଳରେ କାମ କରିଥାଏ । ଅତୀତର ଘଟଣାଗୁଡ଼ିକ ମନେ ରଖି, ଅତୀତରେ ବିଭିନ୍ନ କର୍ମ ପନ୍ଥାରୁ ଉତ୍ପନ୍ନ ଫଳାଫଳ ତୁଳନା କରି ବର୍ତ୍ତମାନ ଗ୍ରହଣ କରୁଥିବା କର୍ମ ପନ୍ଥା ସ୍ଥିର କରେ । ଏହି ଅବସ୍ଥାରେ ଘଟଣା ଘଟିବା ଆଗରୁ ଫଳାଫଳ କହିବାକୁ ଆରମ୍ଭ କରେ । ଭବିଷ୍ୟତ ଘଟଣା ଦେଖିପାରେ, ଅତୀତ ବଳରେ ଭବିଷ୍ୟତ ବିଚାର କରି ଓ ଘଟିଥିବା ବିଷୟ ମନେ ରଖି, ଅନାଗତ ବିଷୟରେ ସିଦ୍ଧାନ୍ତ ଗ୍ରହଣ କରେ । ଏସବୁ କରିବାକୁ ସକ୍ଷମ ହେବା ବେଳକୁ ମଣିଷ ହିସାବରେ ଆଖିରେ ପଡ଼ିବା ଭଳି ତାର ଅଗ୍ରଗତି ହୋଇଥାଏ । ଏହି ଅବସ୍ଥାରେ ସେ କେବଳ ତାର ସ୍ଥୂଳ ଶରୀରସ୍ଥ ମସ୍ତିଷ୍କ ସାହାଯ୍ୟରେ କାମ କରିପାରେ ଓ ତା ବାହାରେ କାର୍ଯ୍ୟ କରିବାକୁ ଅକ୍ଷମ ଥାଏ । କିନ୍ତୁ ସେ ତାର ଚେତନାକୁ ବିକଶିତ କରୁଥାଏ । ତାର ଚେତନା ଗୋଟିଏ ବ୍ୟକ୍ତି ସତ୍ତାଭାବରେ କାମ କରିବାକୁ ଆରମ୍ଭ କରିସାରିଥାଏ ।, ସେ ଘଟଣା ସ୍ରୋତରେ ଭାସି ନ ଯାଇ କିମ୍ବା କୌଣସି ବାହାର ଚାପାର ବଶବର୍ତ୍ତୀ ନ ହୋଇ ନିଜର କର୍ମ ପନ୍ଥା ବାଛି ନିଏ । ଏହି ନିର୍ଦ୍ଦିଷ୍ଟ ଉପାୟରେ ମଣିଷର ବିକାଶ ଲାଭ କରିବା ସାଧାରଣ ଭାବରେ ଦୃଷ୍ଟିରେ ପଡ଼େ । ପରେ ସେ କ୍ରମଶଃ ତା ଚରିତ୍ରର ଅଧିକରୁ ଅଧିକ ଉନ୍ନତି ଘଟାଏ ଏବଂ ଇଚ୍ଛା ଶକ୍ତିର ବିକାଶ କରିଥାଏ ।

ଏ ବିଷୟରେ ଦୃଢ଼ ଇଚ୍ଛାଶକ୍ତି ଓ ଦୁର୍ବଳ ଇଚ୍ଛା ଶକ୍ତିର ବ୍ୟକ୍ତିମାନେ ବାରି ହୋଇ ଯାଆନ୍ତି । ଦୁର୍ବଳ ଇଚ୍ଛା ଶକ୍ତିର ବ୍ୟକ୍ତିମାନେ ବାହାରର ଆକର୍ଷଣ ବିକର୍ଷଣ ଦ୍ୱାରା ପରିଚାଳିତ ହୁଅନ୍ତି କିନ୍ତୁ ଦୃଢ଼ ଇଚ୍ଛା ଶକ୍ତିର ଲୋକମାନେ ନିଜ ଅନ୍ତର ଭିତରର ନିର୍ଦ୍ଦେଶରେ ପରିଚାଳିତ ହୁଅନ୍ତି ଏବଂ ନିଜ ଅନ୍ତରରେ ପୂର୍ବରୁ ଗଚ୍ଛିତ ଅଭିଜ୍ଞତା ଦ୍ୱାରା ଚାଳିତ ହୋଇ ବାହାର ଅବସ୍ଥା ଉପରେ ଉପଯୁକ୍ତ ବଳ ପ୍ରୟୋଗ କରି ତାକୁ ସର୍ବଦା ବଶୀଭୂତ କରି ରଖି ଥାଆନ୍ତି । ପାର୍ଥିବ ମସ୍ତିଷ୍କ ଯେତିକି ସୁନିୟନ୍ତ୍ରିତ, ମାର୍ଜିତ ଓ ସଂବେଦନଶୀଳ ହୁଏ, ଜନ୍ମ ଜନ୍ମ ଧରି

ସଂଗୃହୀତ ହୋଇ ଗନ୍ତାଘରେ ଗଚ୍ଛିତ ଥିବା ଅଭିଜ୍ଞତା ସମଷ୍ଟି ସେତେ ଅଧିକ ପରିମାଣରେ କାର୍ଯ୍ୟରେ ଲାଗେ । ଏହି ଭଣ୍ଡାରଟି ମଣିଷ ଭିତରେ ହିଁ ଅଛି । କିନ୍ତୁ ସେଥିରୁ ଯେତିକି ଅଂଶ ସେ ପାର୍ଥିବ ଚେତନାରେ (ସ୍ଥୂଳ ମସ୍ତିଷ୍କ) ଆରୋପ କରିପାରେ ସେତିକି ମାତ୍ର ତା ବ୍ୟବହାରରେ ଲାଗିପାରେ । ମଣିଷର ନିଜର ସ୍ମୃତି ଶକ୍ତି ଅଛି ଓ ନିଜେ ବିଚାର କରିପାରେ । ସେ ନିଜେ ବିଚାର କରେ, ନିର୍ବାଚନ କରେ ଓ ସିଦ୍ଧାନ୍ତ ଗ୍ରହଣ କରେ ସତ କିନ୍ତୁ ତାକୁ ଏ ସମସ୍ତ କାର୍ଯ୍ୟ ସ୍ଥୂଳ ଓ ଇଥରୀୟ ମସ୍ତିଷ୍କ ସାହାଯ୍ୟରେ ସ୍ଥୂଳ ଶରୀରର ସ୍ନାୟବିକ ମଣ୍ଡଳ ଏବଂ ତା ସହିତ ସଂଲଗ୍ନ ଇଥରୀୟ ଅବୟବ ଦ୍ୱାରା ସେ ଏହି ସବୁ କାର୍ଯ୍ୟ କରିଥାଏ । ମସ୍ତିଷ୍କ ଯେତେ ସଂବେଦନଶୀଳ ହୁଏ, ମଣିଷ ଏହାର ଉପାଦାନର ଯେତିକି ଉନ୍ନତି ବିଧାନ କରେ ଓ ଏହାକୁ ନିଜ ନିୟନ୍ତ୍ରଣରେ ଆଣିପାରେ, ସେତିକି ଅଧିକ ଏହାକୁ ସେ ନିଜର ଆତ୍ମ ପ୍ରକାଶରେ ବ୍ୟବହାର କରିପାରେ ।

ଆମ ଆଗରେ ବର୍ତ୍ତମାନ ପ୍ରଶ୍ନ ହେଲା, ଇହ ଲୋକରେ ଜୀବନ ଯାତ୍ରା କାଳରେ ଚେତନାର ବାହନଗୁଡ଼ିକୁ ଆମେ କିପରି ଭାବରେ ତାଲିମ୍ ଦେବୁ, ଯଦ୍ୱାରା ସେଗୁଡ଼ିକ ଉନ୍ନତତର ଯନ୍ତ୍ର ରୂପେ ଆମର କାର୍ଯ୍ୟରେ ଲାଗିବେ । ବର୍ତ୍ତମାନ ଆମର ଅଧ୍ୟୟନର ବିଷୟ ବାହନଗୁଡ଼ିକର ଶାରୀରିକ ବିକାଶ ନୁହେଁ । ଆଲୋଚ୍ୟ ହେଉଛି ଚେତନା ସେଗୁଡ଼ିକୁ ଚିନ୍ତାର ଯନ୍ତ୍ରରୂପେ ବ୍ୟବହାର କରିବା ପାଇଁ କି ପ୍ରକାର ତାଲିମ ଦେବା ଆବଶ୍ୟକ । ଯଦି ଜଣେ ଲୋକ ତାର ଏହି ସବୁ ଯନ୍ତ୍ରଗୁଡ଼ିକର ଉନ୍ନତି ପାଇଁ ପାର୍ଥିବ ସ୍ତରରେ ଦୃଷ୍ଟି ରଖିଛି, ସେଗୁଡ଼ିକୁ ଅଧିକ ବ୍ୟବହାର ଯୋଗ୍ୟ କରିବା ପାଇଁ ସ୍ଥିର କରିଛି, ତେବେ ସେମାନେ ଶିକ୍ଷା କରିବା ଦରକାର ଯେପରି କ୍ରମ ରକ୍ଷା କରି ତାଙ୍କ ପାଖକୁ ପ୍ରେରିତ ସଂବେଗ ଗୁଡ଼ିକର ଉତ୍ତର ତତ୍ପରତାର ସହିତ ଦେଇ ପାରିବେ । ଏପରି କଲେ ମସ୍ତିଷ୍କ ଧାରା ବାହିକ ଭାବରେ ପ୍ରତିବେଦନଶୀଳ (responsive) ହେବ । ସେ ଲୋକ ନିଜେ ମଧ୍ୟ କ୍ରମ ରକ୍ଷା କରି ଭାବିବ, ତଦ୍ୱାରା କ୍ରମ ହୀନ, ଅସଂଲଗ୍ନ ସ୍ପନ୍ଦନ ପରିବର୍ତ୍ତେ କ୍ରମ ରକ୍ଷା କରୁଥିବା ସ୍ପନ୍ଦନ ଧାରା ମସ୍ତିଷ୍କକୁ ପ୍ରେରଣ କରି ତଦନୁଯାୟୀ କ୍ରମ ରକ୍ଷା କରି ସଂଯୁକ୍ତ ଅଣୁମାଳା ସାହାଯ୍ୟରେ କାର୍ଯ୍ୟ କରିବା ପାଇଁ ତାକୁ ଅଭ୍ୟସ୍ତ କରାଇ ପାରିବ । ଚିନ୍ତା କରିବା ମଣିଷ ଆରମ୍ଭ କରେ ମସ୍ତିଷ୍କ କେବଳ ଅନୁକରଣ କରେ । ଅସଂଲଗ୍ନ

ଯତ୍ନହୀନ ଭାବନା ମସ୍ତିଷ୍କରେ ଅସଂଲଗ୍ନ ସ୍ପନ୍ଦନଶୀଳ ଗୁଚ୍ଛ ସବୁ ତିଆରି କରେ । ଏ ଶିକ୍ଷାର ଦୁଇଟି ସୋପାନ ଅଛି । ପ୍ରଥମ ମଣିଷ ସ୍ଥିର ନିଶ୍ଚୟ କରିବ ଯେ ସେ କ୍ରମ ରକ୍ଷା କରି ଚିନ୍ତା କରିବ ଏବଂ ମାନସ ଶରୀରକୁ ଯହିଁ ତହିଁ ଯତ୍ନହୀନ ଭାବରେ ଉପନୀତ ହେବାକୁ ନ ଦେଇ ଗୋଟିଏ ଚିନ୍ତାରୁ ଅନ୍ୟ ଗୋଟିଏ ଚିନ୍ତା ସହ ଶୃଙ୍ଖଳିତ କରିବାକୁ ଶିକ୍ଷା ଦେବ । ଚିନ୍ତା ସୁଶୃଙ୍ଖଳ ହେବା ପରେ, ତା ଚିନ୍ତାର ଉତ୍ତରରେ ସ୍ପନ୍ଦିତ ହେଉଥିବା ମସ୍ତିଷ୍କକୁ ଚିନ୍ତା ସ୍ପନ୍ଦନର ଅନୁବର୍ତ୍ତୀ ହେବାକୁ ଶିକ୍ଷା ଦେବ । ଏହିପରି ଭାବରେ ପାର୍ଥିବ ଅଙ୍ଗ ସବୁ, ଯଥା : ସ୍ନାୟୁମଣ୍ଡଳ ଓ ଇଥରୀୟ ଅଙ୍ଗ ନିର୍ଦ୍ଦିଷ୍ଟ ପ୍ରଣାଳୀରେ, ଧାରାବାହିକ ଭାବରେ କାର୍ଯ୍ୟ କରିବାକୁ ଅଭ୍ୟାସ କରନ୍ତି ଏବଂ ସେମାନଙ୍କର ଅଧିକାରୀ ଦରକାର କଲେ ତତ୍ପରତା ସହିତ ସୁଶୃଙ୍ଖଳ ରୀତିରେ ପ୍ରତିବେଦନ କରି ଥାଆନ୍ତି । ଚାହିଁବା ବେଳକୁ ପାଖରେ ପ୍ରସ୍ତୁତ ଥାଆନ୍ତି । ଯନ୍ତ୍ରଗୁଡ଼ିକ ପଜାଇ ପରିଷ୍କାର କରି କାର୍ଯ୍ୟ ପାଇଁ ସର୍ବଦା ପ୍ରସ୍ତୁତ ରଖିଥିବା ଜଣେ ଯତ୍ନଶୀଳ କାରିଗର ଓ ଯନ୍ତ୍ରଗୁଡ଼ିକୁ ମଇଳା କଳଙ୍କି ଖିଆ ବ୍ୟବହାର ଅଯୋଗ୍ୟ କରି ରଖିଥିବା ଆଉ ଜଣେ କାରିଗର ଭିତରେ ପାର୍ଥକ୍ୟ ଯାହା ଚେତନାଦ୍ୱାରା ତାଲିମ ପ୍ରାପ୍ତ ଏକବାହନ ଓ ତାଲିମ ନ ପାଇ ଥିବା ଅନ୍ୟ ଏକ ବାହନ ମଧ୍ୟରେ ପାର୍ଥକ୍ୟ ଠିକ୍ ତାହା । ସେଥିପାଇଁ ପାର୍ଥିବ ଶରୀର ରୂପୀ ବାହନ ସର୍ବଦା ମନର ଡାକରାକୁ ଶୁଣିବା ପାଇଁ ଓ ଉତ୍ତର ଦେବା ପାଇଁ ପ୍ରସ୍ତୁତ ଥିବା ଦରକାର ।

ଏହିପରି ନିରବଚ୍ଛିନ୍ନ ଭାବରେ ସ୍ଥୂଳ ଶରୀର ଉପରେ କାର୍ଯ୍ୟ କରିବା ବଳରେ ମସ୍ତିଷ୍କର କାର୍ଯ୍ୟ ଦକ୍ଷତା ବୃଦ୍ଧି ହେଲେ ଶିକ୍ଷା ଶେଷ ହୋଇଯାଏ ନାହିଁ । କାରଣ ସ୍ଥୂଳ ଶରୀରକୁ ପଠା ଯାଉଥିବା ସଂବେଗ ସମୂହକୁ କାମନା ଶରୀର ଭିତର ଦେଇ ଗତି କରିବାକୁ ପଡ଼େ ଏବଂ ତହିଁରେ ସେ ତାର ପ୍ରଭାବ ମିଶାଇ ଦିଏ । ଆମେ ଜାଣନ୍ତି କାମ ଲୋକ ପଦାର୍ଥ ପାର୍ଥିବ ପଦାର୍ଥ ଅପେକ୍ଷା ଚିନ୍ତାର ସ୍ପନ୍ଦନ ପ୍ରତି ବହୁ ଅଧିକ ପରିମାଣରେ ପ୍ରତିବେଦନଶୀଳ । ତେଣୁ ଆମେ ଆଲୋଚନା କରୁଥିବା କାର୍ଯ୍ୟପଦ୍ଧତିର ପ୍ରଭାବ ସ୍ଥୂଳ ଶରୀର ତୁଳନାରେ କାମନା ଶରୀର ଉପରେ ବେଶି ପଡ଼ିଥାଏ । ଏହା ବଳରେ କାମନା ଶରୀର ଗୋଟିଏ ନିର୍ଦ୍ଦିଷ୍ଟ ଆକୃତି ଲାଭ କରେ ଏବଂ ସୁଗଠିତ ହୁଏ ।

ମଣିଷ ଯେତବେଳେ ମସ୍ତିଷ୍କ ଉପରେ ଆଧିପତ୍ୟ ଜାରି ରଖିବାକୁ ଶିଖିଯାଏ, ସେ ଏକାଗ୍ରତା ଅଭ୍ୟାସ କରିନିଏ, ସେ ଯେପରି ଇଚ୍ଛା ଓ

ଯେତେବେଳେ ଇଚ୍ଛା ଚିନ୍ତା କରିପାରେ, ସେତେବେଳେ ଏସବୁର ଅନୁପାତରେ ତାର ସ୍ୱପ୍ନ ଜୀବନରେ ମଧ୍ୟ ଉନ୍ନତି ଘଟିଥାଏ, ଯଦିଓ ପାର୍ଥିବ ଜଗତରେ ସେ ଏ ସମ୍ପର୍କରେ ସଚେତନ ରହିଥାଏ । ତାର ସ୍ୱପ୍ନଗୁଡ଼ିକ ପରିଷ୍କାର ଭାବରେ ମନରେ ରହେ, ଜୀବନ୍ତ ଓ ବିଚାର ସମ୍ମତ ହୁଏ; ଏପରିକି ଶିକ୍ଷାପ୍ରଦ ମଧ୍ୟ ହୋଇଥାଏ । ଏହି ଅବସ୍ଥାରେ ମଣିଷ ଚେତନାର ଦ୍ୱିତୀୟ ଯାନ ଭୂବୀୟ ଶରୀରରେ କାମ କରିବାକୁ ଆରମ୍ଭ କରେ । ଚେତନାର ଦ୍ୱିତୀୟ ମହାନ ରାଜ୍ୟରେ ପ୍ରବେଶ କରି ସେଠାରେ ସ୍ଥୂଳ ଶରୀର ବିନା ଭୂବୀୟ ଶରୀରରେ କାର୍ଯ୍ୟ କରେ । ଆମେ ଏବେ ଦୁଇ ଜଣ ସମ୍ପୂର୍ଣ୍ଣ ରୂପେ ଜାଗ୍ରତ ଲୋକଙ୍କ ଭିତରେ ଥିବା ପାର୍ଥକ୍ୟ କଥା ବିଚାର କରିବା । ସେମାନଙ୍କ ମଧ୍ୟରୁ ଜଣେ ତାଙ୍କ ଅଜ୍ଞାତସାରରେ କାମନା ଶରୀରକୁ ମନ ଓ ମସ୍ତିଷ୍କର ସେତୁ ହିସାବରେ ସ୍ୱପ୍ନରେ ବ୍ୟବହାର କରୁଛନ୍ତି ଏବଂ ଅନ୍ୟ ଜଣେ ଏହାକୁ ଜ୍ଞାତସାରରେ ବାହନ ହିସାବରେ ବ୍ୟବହାର କରୁଛନ୍ତି । ଏ ଦୁହିଙ୍କ ଭିତରୁ ପ୍ରଥମ ବ୍ୟକ୍ତିଙ୍କର କାମନା ଶରୀର ଚେତନାର ବାହନ ରୂପେ ବ୍ୟବହାର ପାଇଁ ଯୋଗ୍ୟ ହୋଇ ନଥିବାରୁ, ସେ ସବୁ ବିଷୟ ଅତି ସାଧାରଣ ଓ ସୀମିତ ଭାବରେ ଦେଖନ୍ତି । କିନ୍ତୁ ଅନ୍ୟ ବ୍ୟକ୍ତି କାମ-ଲୌକିକ ଦୃଷ୍ଟି ବ୍ୟବହାର କରି ପାରୁଥିବାରୁ ପାର୍ଥିବ ବସ୍ତୁର ସୀମା ଭିତରେ ଆବଦ୍ଧ ରୁହନ୍ତି ନାହିଁ । ସେ ସବୁ ସ୍ଥୂଳ ବସ୍ତୁ ଭିତର ଦେଇ ଦେଖି ପାରନ୍ତି । ସେ ଆଗ ପଛ ଉଭୟ ଦିଗରେ ଦେଖି ପାରନ୍ତି । ତାଙ୍କ ଆଗରେ କାଛ ପ୍ରଭୃତି ଅସ୍ୱଚ୍ଛ ବସ୍ତୁ କାଚ ପରି ସ୍ୱଚ୍ଛ ହୋଇଯାଏ ଓ ତା ଭିତର ଦେଇ ସେ ଦେଖିପାରନ୍ତି । ସେ କାମ ପଦାର୍ଥର ରୂପ ଓ ବର୍ଣ୍ଣ, କାମ ଲୋକର ଜ୍ୟୋତି ଓ ମୌଳିକ ପ୍ରାଣୀ (ଯକ୍ଷ) ଇତ୍ୟାଦି ଦେଖି ପାରନ୍ତି । ଗୋଟିଏ ସଙ୍ଗୀତ ଆସରକୁ ଗଲେ ସେ ସଙ୍ଗୀତର ସ୍ୱର ଶୁଣିବା ସଙ୍ଗେ ସଙ୍ଗେ ଅପୂର୍ବ ଆଲୋକର ସମନ୍ୱୟ ଦେଖି ପାରନ୍ତି, ଯାହାକି ସଙ୍ଗୀତର ଉତ୍ଥାନ ପତନର କ୍ରମ ଅନୁସାରେ ବୃଦ୍ଧି ବା ହ୍ରାସ ଲାଭ କରୁଥାଏ । ଯଦି ସେ କେଉଁଠିକୁ ଭାଷଣ ଶୁଣିବାକୁ ଯାଆନ୍ତି, ତେବେ ବକ୍ତାର କଥା ଶୁଣିବା ସହିତ ସେ ବକ୍ତାଙ୍କ ଚିନ୍ତାର ରଙ୍ଗ ଓ ଆକୃତି ଦେଖି ପାରନ୍ତି ଏବଂ କେବଳ ଶବ୍ଦ ଶୁଣୁଥିବା ଲୋକମାନଙ୍କ ଅପେକ୍ଷା ଖୁବ୍ ବେଶି ପରିମାଣରେ ବକ୍ତା ଭାବ ଧାରା ବୁଝି ପାରନ୍ତି । ଏହାର କାରଣ ହେଉଛି ଶବ୍ଦକୁ ପ୍ରତୀକ କରି ଯେଉଁ ଚିନ୍ତା ଧାରା ନିଃସୃତ ହୁଏ ତାହା ବର୍ଣ୍ଣ ଓ ସଙ୍ଗୀତ ଆକାରରେ କାମ ବସ୍ତୁରେ

ପରିହିତ ହୋଇ ମଣିଷର କାମ ଶରୀରକୁ ପ୍ରଭାବିତ କରେ । ଯଦି ଚେତନା ସେ ଶରୀରରେ ଜାଗ୍ରତ ହୋଇଥାଏ ତେବେ ସେ ଏହି ଅଧିକ ଅନୁଭୂତିକୁ ଗ୍ରହଣ କରିପାରେ ଏବଂ ସ୍ମୃତି ପଟରେ ଅଙ୍କିତ କରି ରଖେ । ଅନେକ ଲୋକ ନିଜକୁ ବିଶ୍ଳେଷଣ କଲେ ଦେଖିବେ ସେମାନେ କୌଣସି କୌଣସି ବକ୍ତାଙ୍କ ଭାଷଣରେ କୁହା ହୋଇ ଥିବା ଶବ୍ଦ ବାହାରେ ବହୁତ କିଛି ଭାବ ଗ୍ରହଣ କରି ପାରି ଛନ୍ତି, ଯଦିଓ ସେମାନେ ଶୁଣିବା ବେଳେ ଏ ବିଷୟରେ ଅବଗତ ନଥିଲେ । ଅନେକ ଲୋକ ତାଙ୍କ ସ୍ମୃତିରେ ବକ୍ତାଙ୍କ କଥାରୁ ଅଧିକ ଜିନିଷ ପାଆନ୍ତି । ବେଳେବେଳେ ଏହା ପ୍ରସ୍ତାବ କ୍ରମେ ଗୋଟିଏ ଭାବନା ସହିତ ଲାଗି ରହିଥାଏ, ସତେ ଯେପରି କୁହା ଯାଉଥିବା କଥାକୁ ଆଶ୍ରୟ କରି ସେସବୁ ଜାଗ୍ରତ ହୋଇଛି । କାନରେ ଶୁଣିବା କଥା ଅପେକ୍ଷା ତାର ଅର୍ଥ ଅନେକ ଅଧିକ । ଏହି ପ୍ରକାର ଅଭିଜ୍ଞତାରୁ ଜଣାପଡ଼େ ଯେ କାମନା ଶରୀର ବ୍ୟବହାର କରିବା ସଙ୍ଗେ ସଙ୍ଗେ ତାହା ଅଧିକରୁ ଅଧିକ ପୁଷ୍ଟ ଓ ସଂଗଠିତ ହୁଏ ।

ଶୋଇଲା ବେଳେ ଅଚେତନ ରହିବାର କାରଣ ଦୁଇଟି : ଗୋଟିଏ ହୋଇ ପାରେ ତାର କାମନା ଶରୀରର ବୃଦ୍ଧି ଅତି ଅଳ୍ପ ଏବଂ ଅନ୍ୟଟି ହୋଇପାରେ କାମନା ଶରୀର ସହିତ ସ୍ଥୂଳ ଶରୀରର ମସ୍ତିଷ୍କକୁ ସଂଯୋଗ କରିବା ପାଇଁ ଚେତନା ସୂତ୍ରର ଅଭାବ । ମଣିଷ ଜାଗ୍ରତ ଅବସ୍ଥାରେ ମନର ଚିନ୍ତା ଧାରାକୁ କାମନା ଶରୀର ଜରିଆରେ ସ୍ଥୂଳ ମସ୍ତିଷ୍କକୁ ପ୍ରେରଣ କରେ । କିନ୍ତୁ ମଣିଷ ଯେଉଁ ମସ୍ତିଷ୍କ ସାହାଯ୍ୟରେ ବାହାର ଜଗତର ପ୍ରଭାବ ଗ୍ରହଣ କରିବାରେ ଅଭ୍ୟସ୍ତ, ସେହି ପାର୍ଥିବ ମସ୍ତିଷ୍କ ଯଦି ସକ୍ରିୟ ନ ରହେ ତେବେ ତା ଅବସ୍ଥା 'ବର୍ମ ପରିଧାନରେ ଅନଭ୍ୟସ୍ତ ଡେଭିଡ଼' ପରିହେବ । କାରଣ ଏ ପର୍ଯ୍ୟନ୍ତ ସେ କାମନା ଶରୀରକୁ ସ୍ୱତନ୍ତ୍ର ଭାବେ ବ୍ୟବହାର କରି ଜାଣି ନାହିଁ । ସେଥିପାଇଁ କେବଳ କାମନା ଶରୀର ସାହାଯ୍ୟରେ ଆଗତ ସମ୍ବେଦନା ପ୍ରତି ଯଥାଯଥ ଭାବେ ପ୍ରତିବେଦନଶୀଳ ହୋଇପାରେ ନାହିଁ । ତା ଛଡ଼ା ଯଦିଓ ସେ କାମନା ଶରୀରକୁ ସ୍ୱତନ୍ତ୍ର ଭାବରେ କାମଲୋକ ସ୍ତରରେ ବ୍ୟବହାର କରିବାକୁ ଶିଖିଥାଏ, ତଥାପି ସ୍ଥୂଳ ଶରୀରକୁ ଫେରି ଆସିବା ପରେ ଜାଣିପାରେ ନାହିଁ ଯେ ସେ କାମନା ଶରୀର ବ୍ୟବହାର କରୁଥିଲା । ମନର ଅଗ୍ରଗତିର ଏହା ଆଉ ଏକ ସ୍ତର । ସେ କାମ-ଲୋକ ଓ ପାର୍ଥିବ ସ୍ଥୂଳ ଲୋକ ମଧ୍ୟରେ ସମ୍ପର୍କ ସ୍ଥାପନ କଲା ପର୍ଯ୍ୟନ୍ତ, ସେହିପରି ଅଜଣା ଭାବରେ କାମନା

ଶରୀରକୁ କାମ ଲୋକରେ ବ୍ୟବହାର କରୁଥାଏ । ଶେଷରେ ସେ ଏହି ସୂତ୍ର ସ୍ଥାପନ କଲେ, ସମ୍ପୂର୍ଣ୍ଣ ଚେତନା ଥାଇ ଗୋଟିକ ପରେ ଗୋଟିଏ ବାହନ ବ୍ୟବହାର କରି କାମଲୋକରୁ ମୁକ୍ତିପାଏ । କାମଲୋକ ଚେତନାର ସୀମା ଭିତରେ ମିଶିଯିବାପରେ ନିଶ୍ଚିତ ଭାବରେ ମଣିଷ ତାର ଜାଗ୍ରତ ଚେତନାର ପରିସୀମା ବଢ଼ାଇ କାମଜଗତକୁ ତାର ଅନ୍ତର୍ଭୁକ୍ତ କରିଦିଏ । ସ୍ଥୂଳ ଶରୀରରେ ଥିଲେ ସୁଦ୍ଧା ତାର କାମଲୌକିକ ଇନ୍ଦ୍ରିୟଗୁଡ଼ିକ ସମ୍ପୂର୍ଣ୍ଣ ଆଜ୍ଞାଧୀନ ହୋଇଥାଆନ୍ତି । ଉଭୟ ଜଗତ ମଧ୍ୟରେ ବ୍ୟବଧାନ ନ ରହିବାରୁ ସେ ଏକ ସମୟରେ ଉଭୟ ଜଗତରେ ବାସ କରେ କହିଲେ ଚଳେ ଏବଂ ଇହ ଜଗତରେ ଜନ୍ମାନ୍ଧ ଆଖି ପାଇଲା ପରି ଆନନ୍ଦ ଲାଭ କରେ ।

କ୍ରମ ବିକାଶର ପରବର୍ତ୍ତୀ ସ୍ତରରେ ମନୁଷ୍ୟ ତୃତୀୟ ଲୋକ ବା ମାନସ ଲୋକରେ କାର୍ଯ୍ୟ କରିବା ଆରମ୍ଭ କରେ । ସେ ବହୁକାଳ ପୂର୍ବରୁ ଏହି ଲୋକରେ କାର୍ଯ୍ୟ ଆରମ୍ଭ କରିଥାଏ । ଯେଉଁ ଚିନ୍ତାଧାରାଗୁଡ଼ିକ କାମଲୋକରେ କାର୍ଯ୍ୟକାରୀ ରୂପ ଧାରଣ କରି ମସ୍ତିଷ୍କ ଦ୍ୱାରା ସ୍ଥୂଳ ଜଗତରେ ପ୍ରକାଶିତ ହୋଇଥାଆନ୍ତି, ସେଗୁଡ଼ିକୁ ଏହି ସ୍ତରରୁ ପ୍ରେରଣ କରିବା କାର୍ଯ୍ୟ ଦୀର୍ଘକାଳରୁ ସେ କରି ଆସୁଥାଏ । ମାନସ ଲୋକର ଯାନ, ମାନସ ଶରୀର ସଚେତନ ହେବା ପରେ ସେ ଦେଖେ ଚିନ୍ତା କରିବା ସଙ୍ଗେ ସଙ୍ଗେ ସେ ରୂପ ସୃଷ୍ଟି କରୁଛି । ସେତେବେଳେ ସେ ଏହି ରୂପ ସୃଷ୍ଟି ବିଷୟରେ ସଚେତନ ହୁଏ, ଯଦିଓ ସେ ବହୁକାଳ ହେଲା ଅଜାଣତରେ ସେହି କାର୍ଯ୍ୟ କରିଆସୁଥାଏ । ପାଠକମାନଙ୍କ ମନେଥିବ, (Occult World) (ଆଧ୍ୟାତ୍ମିକ ଜଗତ) ନାମକ ପୁସ୍ତକରେ ଦିଆ ହୋଇଥିବା ଜଣେ ମହାତ୍ମାଙ୍କ ପତ୍ରରେ କୁହାହୋଇଛି ଯେ ସମସ୍ତେ ସର୍ବଦା ସଂକଳ୍ପରୂପ ସୃଷ୍ଟି କରନ୍ତି । କିନ୍ତୁ ଜଣେ ସାଧାରଣ ବ୍ୟକ୍ତି ଓ ଜଣେ ଜୀବନ୍ମୁକ୍ତଙ୍କ ଭିତରେ ପାର୍ଥକ୍ୟ ହେଉଛି, ସାଧାରଣ ଲୋକଟି ସେଗୁଡ଼ିକ ତା ଅଜ୍ଞାତସାରରେ ସୃଷ୍ଟି କରେ, କିନ୍ତୁ ଜୀବନ୍ମୁକ୍ତ ପୁରୁଷ ତାହା ଜ୍ଞାତସାରରେ ସୃଷ୍ଟି କରନ୍ତି । (ଜୀବଜନ୍ମୁକ୍ତ ଶବ୍ଦଟି ମୁଁ ଏଠାରେ ବ୍ୟାପକ ଅର୍ଥରେ ବ୍ୟବହାର କରୁଛି ଯାହାକି ବିଭିନ୍ନ ସ୍ତରର ଦୀକ୍ଷିତମାନଙ୍କଠାରୁ ଆରମ୍ଭ କରି ସିଦ୍ଧ ମହାତ୍ମାଙ୍କ ପର୍ଯ୍ୟନ୍ତ ସମସ୍ତଙ୍କୁ ବୁଝାଇବ ।) ବିକାଶର ଏହି ସ୍ତରରେ ମଣିଷର କାର୍ଯ୍ୟକାରୀ ଶକ୍ତି ବହୁପରିମାଣରେ ବଢ଼ିଯାଏ । ତାର କାରଣ ହେଉଛି, ସେ ନିଜ ଜ୍ଞାତସାରରେ କେତେକ ସଂକଳ୍ପରୂପ ବା କୃତ୍ରିମ ଯକ୍ଷ ସୃଷ୍ଟି କରି ତାକୁ ପ୍ରେରଣ କରିପାରେ ।

ସେ ଯେଉଁଠାକୁ ମାନସିକ ଶରୀରରେ ହଠାତ୍ ଯାଇ ପାରୁନାହିଁ, ସେଠାକୁ କୃତ୍ରିମ ଯକ୍ଷକୁ ପଠାଇ କାର୍ଯ୍ୟ ସାଧନ କରିପାରେ । ଏହାକୁ ସେଥିପାଇଁ କୃତ୍ରିମ ମୌଳିକ ଜୀବ କହନ୍ତି । ମଣିଷ ନିକଟ ସ୍ଥାନରେ ଯେପରି ଦୂରସ୍ଥାନରେ ସେହିପରି ଏକ ସଙ୍ଗରେ କାର୍ଯ୍ୟ କରିପାରୁ ଥିବାରୁ ତାର କାର୍ଯ୍ୟ ଦକ୍ଷତା ବଢ଼ିଯାଏ । ସେ ଏହି ସଂକଳ୍ପ ରୂପ ବା ମୌଳିକ ଜୀବଗୁଡ଼ିକ ଦୂରରୁ ନିୟନ୍ତ୍ରଣ କରେ, ତାଙ୍କ କାର୍ଯ୍ୟ ପ୍ରତି ଦୃଷ୍ଟି ରଖି ଠିକଣା ଦିଗରେ ଚଳାଏ ଏବଂ ତା ଇଚ୍ଛାର ପ୍ରତିନିଧି କରି ଗଢ଼େ । ମାନସ ଶରୀର ପରିପୁଷ୍ଟ ହେବା ସଙ୍ଗେ ସଙ୍ଗେ ମଣିଷ ତା ଭିତରେ ଅଧିକ ସଚେତନ ଭାବରେ କାମ କରିବାରେ ଲାଗେ । ସେ ମାନସ ଲୋକରେ ଯାପନ କରୁଥିବା ଅଧିକ ବିସ୍ତୃତ ଓ ମହତ୍ତର ଜୀବନ କଥା ଜାଣିପାରେ । ଯେତେବେଳେ ସେ ସ୍ଥୂଳ ଶରୀରରେ ରହିଥାଏ ସ୍ଥୂଳ ପାରିପାର୍ଶ୍ୱିକ ଅବସ୍ଥା ସମ୍ବନ୍ଧରେ ସଚେତନ ଥାଏ, କିନ୍ତୁ ତା ସଙ୍ଗେ ସଙ୍ଗେ ଉଚ୍ଚତର ଜଗତରେ ଜାଗ୍ରତ ରହି କାର୍ଯ୍ୟ ବ୍ୟସ୍ତ ଥାଏ ଏବଂ ଉଚ୍ଚତର ବୃତ୍ତିଗୁଡ଼ିକୁ ବ୍ୟବହାର କରିବା ପାଇଁ ସ୍ଥୂଳ ଶରୀରକୁ ଶୁଆଇ ପକାଇବା ଦରକାର ହୁଏ ନାହିଁ । ସେ ଅଭ୍ୟସ୍ତ ଭାବରେ ମାନସିକ ଇନ୍ଦ୍ରିୟକୁ ବ୍ୟବହାର କରି ତା ସାହାଯ୍ୟରେ ମାନସ ଲୋକରେ ସମସ୍ତ ପ୍ରକାର ସମ୍ବେଦନକୁ ଗ୍ରହଣ କରିଥାଏ । ସେଥିପାଇଁ ସେ ସ୍ଥୂଳ ଜଗତରେ ଯେକୌଣସି ବ୍ୟକ୍ତିର ସ୍ଥୂଳ ଶରୀରର ଅବସ୍ଥା ଦେଖିବା ସଙ୍ଗେ ସଙ୍ଗେ ତା ମାନସ ରାଜ୍ୟରେ ଘଟୁଥିବା ଘଟଣା ମଧ୍ୟ ଦେଖିପାରେ ।

ମଣିଷ ଯେତେବେଳେ ବିକାଶର ଏହି ସ୍ତରରେ ଉପସ୍ଥିତ ହୁଏ ତାର ଅକାଙ୍କ୍ଷିତ ଉଚ୍ଚସ୍ତରଠାରୁ ନିମ୍ନରେ ଥିଲେ ସୁଦ୍ଧା ସାଧାରଣ ଲୋକମାନଙ୍କ ତୁଳନାରେ ବହୁ ଉଚ୍ଚରେ ପହଞ୍ଚି ଯାଇଥାଏ ଏବଂ ସଚେତନ ଭାବରେ ତାର ତୃତୀୟ ବାହନ ମାନସ ଶରୀରରେ କାମ କରେ । ଯାହା କିଛି ସେଠାରେ କରୁଛି ତାହା ଅନୁଶୀଳନ କରିପାରେ ଓ ତାହାର ଶକ୍ତିର ବିସ୍ତାର ସୀମା ଅନୁଭବ କରିପାରେ । ପ୍ରୟୋଜନ ଦୃଷ୍ଟିରୁ ସେ ତାର ଏହି ବାହନ ଏବଂ ନିଜ ଭିତରେ ପାର୍ଥକ୍ୟ କେଉଁଠି ତାହା ବୁଝିପାରେ । ସେତେବେଳେ ସେ ଅନୁଭବ କରେ ଯେ ତାର ଦେହାତ୍ମ ସତ୍ତା 'ମୁଁ' ଭ୍ରାନ୍ତିକାରକ । ତାହା କେବଳ ମାନସ ଶରୀରର 'ଅହଂ', ପ୍ରକୃତ ମଣିଷର ନୁହେଁ । ସେ ସଜାଗ ଭାବରେ କ୍ରମେ ନିଜକୁ ମାନସ ଲୋକର ଉଚ୍ଚରେ ଅରୂପ ସ୍ତରରେ, କାରଣ ଶରୀରରେ ବାସ କରୁଥିବା 'ବ୍ୟକ୍ତି

ସତ୍ତା' ସହିତ ଅଭିନ୍ନ ମନେ କରେ । ତାହାର ଏହି ସତ୍ତା, ଯାହା କି ପ୍ରକୃତ ମଣିଷ ବୁଝିପାରେ ଯେ ତାର ମାନସ ଶରୀରରୁ ନିଜକୁ ଉଠାଇ ନେଇ, ତାକୁ ପଛରେ ଛାଡ଼ି ଦେଇ ଉଚ୍ଚତର ଲୋକକୁ ଗଲେ ମଧ୍ୟ ନିଜତ୍ୱ ସତ୍ତା ରକ୍ଷା କରି ପାରିବ । ଏହି ଅବସ୍ଥାରେ ସେ ଜାଣିପାରେ ଯେ ପୂର୍ବରୁ ଯେଉଁ ଜୀବନଗୁଡ଼ିକ କଟି ଯାଇଛି ସେଗୁଡ଼ିକ ପ୍ରକୃତରେ ଗୋଟିଏ ଜୀବନ ଓ ସବୁରି ଭିତରେ ସେଇ ଗୋଟିଏ ବ୍ୟକ୍ତି ସତ୍ତା ଜୀବନ୍ତ ଅଛି ।

ବର୍ତ୍ତମାନ ଆମେମାନେ ବିଭିନ୍ନ ଶରୀର ଭିତରେ ଥିବା ସଂଯୋଗ ସୂତ୍ରଗୁଡ଼ିକ ବିଷୟରେ ବିଚାର କରିବା । ମଣିଷର ଚେତନାର ଜଣା ନଥିଲେ ମଧ୍ୟ ଏହି ସଂଯୋଗ ସୂତ୍ରଗୁଡ଼ିକ ମୂଳରୁ ଥାଆନ୍ତି, ତା ନ ହେଲେ ମଣିଷ ମାନସ ଲୋକରୁ ପାର୍ଥିବ ଲୋକକୁ ଆସି ପାରନ୍ତା ନାହିଁ । କିନ୍ତୁ ସେ ସେମାନଙ୍କ ବିଷୟରେ ସଚେତନ ନୁହେଁ । ସେଗୁଡ଼ିକ କ୍ରିୟାଶୀଳ ଭାବରେ ଜୀବନ୍ତ ନୁହନ୍ତି । ଏଗୁଡ଼ିକ ସ୍ଥୂଳ ଶରୀରର ଅପରିଣତ ଅଙ୍ଗମାନଙ୍କ ପରି । ପ୍ରାଣୀ ବିଜ୍ଞାନର ପ୍ରତ୍ୟେକ ଛାତ୍ର ଜାଣନ୍ତି ଯେ ଅପରିଣତ ଅଙ୍ଗଗୁଡ଼ିକ ଦୁଇ ଭାଗରେ ବିଭକ୍ତ । ସେଥିରୁ କେତେକ ମଣିଷ ଶରୀରର କ୍ରମବିକାଶ ପଥରେ ଯେଉଁ ସ୍ତର ଦେଇ ଆସିଛି ତାହା ଜଣାଇଦିଏ ଏବଂ ଅନ୍ୟଗୁଡ଼ିକ ତା ଭବିଷ୍ୟତ ଉନ୍ନତିର ଦିଗ ପ୍ରତି ଇଙ୍ଗିତ କରେ । ଏହି ଅଙ୍ଗଗୁଡ଼ିକ ଅଛନ୍ତି ସତ କିନ୍ତୁ କାମ କରନ୍ତି ନାହିଁ । ସ୍ଥୂଳ ଶରୀରରେ ସେମାନଙ୍କ କ୍ରିୟା ଶେଷ ହୋଇଯାଇଛି ବା ଆରମ୍ଭ ହୋଇନାହିଁ, ମୃତ ବା ଅଜାତ । ଯେଉଁ ସୂତ୍ରଗୁଡ଼ିକୁ ମୁଁ ଦର୍ଶାଇବାକୁ ସାହସ କରୁଛି, ସେଗୁଡ଼ିକ ଦ୍ୱିତୀୟ ବିଭାଗର, ଅପରିଣତ ଅଙ୍ଗ ଯାହା ସ୍ଥୂଳ ଓ ଇଥରୀୟ ଶରୀରକୁ କାମନା ଶରୀର ସହିତ କାମନା ଶରୀରକୁ ମାନସ ଶରୀର ସହିତ ଏବଂ ମାନସ ଶରୀକୁ କାରଣ ଶରୀର ସହିତ ସଂଯୁକ୍ତ କରୁଛନ୍ତି । ସେଗୁଡ଼ିକର ଅସ୍ତିତ୍ୱ ଅଛି କିନ୍ତୁ ନିଷ୍କ୍ରିୟ ଅବସ୍ଥାରେ । ସେଗୁଡ଼ିକୁ କାର୍ଯ୍ୟକାରୀ କରିବା କଥା, ସେମାନଙ୍କର ପୁଷ୍ଟି ସାଧନ କରିବା କଥା । ସ୍ଥୂଳ ଶରୀର ପରି କେବଳ ବ୍ୟବହାର ବଳରେ ସେଗୁଡ଼ିକୁ କ୍ରିୟାଶୀଳ କରାଯାଇପାରିବ । ସେମାନଙ୍କ ଭିତରେ ଜୀବନ ସ୍ରୋତ ପ୍ରବାହିତ ଅଛି, ମାନସିକ ସ୍ରୋତ ମଧ୍ୟ ପ୍ରବାହିତ । ସେଥିଯୋଗୁ ସେଗୁଡ଼ିକ ଜୀବନ୍ତ ଓ ସବଳ ଥାଆନ୍ତି । କେବଳ ମଣିଷର ଇଚ୍ଛାଶକ୍ତି ଏହି ଅପରିଣତ ସଂଯୋଗ ସୂତ୍ରଗୁଡ଼ିକୁ ପରିପୁଷ୍ଟ କରେ ଏବଂ ତାହାର ଦୃଷ୍ଟି କ୍ରିୟାଶୀଳ କରେ । ଇଚ୍ଛାର କ୍ରିୟା ଏହି

ଅପରିଣତ ଅଙ୍ଗଗୁଡ଼ିକୁ ସଂଜ୍ଞୀବିତ କରେ, କ୍ରମେ କ୍ରମେ ଅତି ମନ୍ଥର ଗତିରେ ଏମାନେ କାର୍ଯ୍ୟ କରିବାକୁ ଆରମ୍ଭ କରନ୍ତି ଏବଂ ମଣିଷ ଗୋଟିଏ ବାହନରୁ ଅନ୍ୟ ଗୋଟିଏ ବାହନକୁ ଗତି କରିବା ପାଇଁ ସେଗୁଡ଼ିକୁ ଚେତନାର ପଥ ଭାବରେ ବ୍ୟବହାର କରିପାରେ ।

ସ୍ଥୂଳ ଶରୀରରେ ସ୍ନାୟବିକ କେନ୍ଦ୍ର ସବୁ ଅଛି । ସେଗୁଡ଼ିକ ସ୍ନାୟବିକ ଅଣୁର ଗୋଟିଏ ଗୋଟିଏ ସମଷ୍ଟି । ସେଗୁଡ଼ିକ ଭିତର ଦେଇ ବାହାରର ପ୍ରଭାବ ଏବଂ ମସ୍ତିଷ୍କର ସମ୍ବେଗ ସଂଚାରିତ ହୁଏ । ସେଗୁଡ଼ିକ ମଧ୍ୟରୁ ଗୋଟିଏ ଖରାପ ହେବା ମାତ୍ରେ ତହିଁରେ ପ୍ରବହମାନ କାର୍ଯ୍ୟ ଧାରାରେ ବିଶୃଙ୍ଖଳା ସୃଷ୍ଟି ହୁଏ ଏବଂ ସ୍ଥୂଳ ଚେତନାରେ ମଧ ବିଭ୍ରାଟ ଘଟେ । କାମନା ଶରୀରରେ ତତ୍ତୁଲ୍ୟ କେନ୍ଦ୍ରମାନ ଅଛି । କିନ୍ତୁ ଜଣେ ଅନୁନ୍ନତ ମଣିଷର ସେ କେନ୍ଦ୍ରଗୁଡ଼ିକ ଅତି ଅପରିଣତ ଓ ନିଷ୍କ୍ରିୟ ଅବସ୍ଥାରେ ଥାଏ । କାମନା ଶରୀରର ଏହି ସବୁ କେନ୍ଦ୍ର କାମନା ଶରୀର ସ୍ଥୂଳ ଶରୀର, ତଥା କାମନା ଶରୀର ଓ ମାନସ ଶରୀର ମଧ୍ୟରେ ସଂଯୋଗ ସୂତ୍ର ରୂପେ କାର୍ଯ୍ୟ କରନ୍ତି । କ୍ରମବିକାଶର ଅଗ୍ରଗତି ସଙ୍ଗେ ସଙ୍ଗେ ସେଗୁଡ଼ିକ ଇଚ୍ଛା ଶକ୍ତିଦ୍ଵାରା ଉଜ୍ଜୀବିତ ହୁଅନ୍ତି ଏବଂ ଭାରତୀୟ ପୁସ୍ତକରେ ବର୍ଣ୍ଣିତ କୁଣ୍ଡଳିନୀକୁ ମୁକ୍ତ ଓ ନିୟନ୍ତ୍ରିତ କରନ୍ତି । କୁଣ୍ଡଳିନୀକୁ ଜାଗ୍ରତ କରିବା ପ୍ରକ୍ରିୟାର ପ୍ରସ୍ତୁତିକରଣ ଭାଗରେ ପ୍ରଥମ ହେଉଛି ବାହନଗୁଡ଼ିକୁ ତାଲିମ ଦେବା ଓ ମାର୍ଜିତ କରିବା । ଯଦି ତାହା ସମ୍ପୂର୍ଣ୍ଣ ରୂପେ ସାଧିତ ନ ହୁଏ ଏହି ଅଗ୍ନିମୟୀ ଶକ୍ତି ବିକାଶ ସାଧନ କରିବା ପରିବର୍ତ୍ତେ ଧ୍ୱଂସକାରିଣୀ ଶକ୍ତିରେ ପରିଣତ ହୁଏ । ସେଥିପାଇଁ ମୁଁ ସର୍ବଦା ବାହନଗୁଡ଼ିକର ଶୋଧନ କ୍ରିୟା ଉପରେ ଏତେ ଜୋର ଦେଇ ଆସିଛି ଏବଂ ଏହା ହିଁ ଯେକୌଣସି ପ୍ରକୃତ ଯୋଗର ଅପରିହାର୍ଯ୍ୟ ପ୍ରାଥମିକ ଅଙ୍ଗ ବୋଲି କହିଛି ।

ଜଣେ ଲୋକ ନିରାପଦରେ ଏହି ସଂଯୋଜକ କେନ୍ଦ୍ରଗୁଡ଼ିକୁ କାର୍ଯ୍ୟକାରୀ କରିବା ବିଷୟରେ ଉପଦେଶ ଗ୍ରହଣ କରିବା ପାଇଁ ଉପଯୁକ୍ତ ହେବା ସଙ୍ଗେ ସଙ୍ଗେ ସେପରି ବିଶ୍ୱସ୍ତ ନିଃସ୍ୱାର୍ଥପର ଓ ଆଗ୍ରହୀ ସାଧକମାନଙ୍କୁ ସାହାଯ୍ୟ କରିବାକୁ ସର୍ବଦା ପ୍ରସ୍ତୁତ ଥିବା ମହାତ୍ମାମାନଙ୍କଠାରୁ ସାହାଯ୍ୟ ଆପଣା ଛାଏଁ ଆସେ । ତାପରେ ଦିନେ ମଣିଷ ନିଜକୁ ସମ୍ପୂର୍ଣ୍ଣ ଜାଗ୍ରତ ଅବସ୍ଥାରେ ସ୍ଥୂଳ ଶରୀରରୁ ଧୀରେ ଧୀରେ ବାହାରି ଯାଉଥିବା ଦେଖେ । ଚେତନାର କୌଣସି ବାଧା ନ ଘଟି ସେ ନିଜକୁ ମୁକ୍ତ ହୋଇ ଯାଉଥିବା

ଆବିଷ୍କାର କରେ । ଏପରି କେତେଥର ଘଟିବା ପରେ ଏକ ବାହନରୁ ଅନ୍ୟବାହନକୁ ଗତିକରିବା କ୍ରମେ ସହଜ ଓ ସାଧାରଣ ଘଟଣା ହୋଇଯାଏ । ସାଧାରଣତଃ କାମନା ଶରୀର ସ୍ଥୂଳ ଶରୀରକୁ ସୁପ୍ତ ଅବସ୍ଥାରେ ଛାଡ଼ିଗଲା ବେଳେ ଅଳ୍ପ ଅଚେତନ କାଳ ରହିଯାଏ । କାମଲୋକରେ ସେ ସକ୍ରିୟ ଭାବରେ କାମକରି ପୁନରାୟ ଅଚେତନ ଅବସ୍ଥାରେ ଫେରିଆସେ ଏବଂ ଏହି ଅଚେତନ କାଳଟିକୁ ଚେତନାରେ ଯୋଗ କରିପାରେ ନାହିଁ । ସ୍ଥୂଳ ଶରୀରକୁ ଯେପରି ଅଚେତନ ଅବସ୍ଥାରେ ଛାଡ଼ି ଯାଇଥାଏ ଫେରିଆସି ଠିକ ସେହିପରି ଅଚେତନ ଅବସ୍ଥାରେ ପାଏ । ମଣିଷ ସେ ସମୟରେ କାମଲୋକରେ ସମ୍ପୂର୍ଣ୍ଣ ଓ ସ୍ୱଷ୍ଟ ସଚେତନ ଅବସ୍ଥାରେ ଥାଇପାରେ କିନ୍ତୁ ସ୍ଥୂଳ ଶରୀରର ମସ୍ତିଷ୍କରେ ଏହି ସମୟର ପ୍ରତିକୃତିରେ ତାହାର କିଛି ଚିହ୍ନ ପଡ଼େ ନାହିଁ, କେବଳ ଶୂନ୍ୟତାହିଁ ଦେଖାଯାଏ । ତାର ସଂଯୋଜନକାରୀ କେନ୍ଦ୍ରଗୁଡ଼ିକ କ୍ରିୟାଶୀଳ ହୋଇଯିବା ପରେ ମଣିଷ ସଚେତନ ଅବସ୍ଥାରେ ସ୍ଥୂଳ ଶରୀରକୁ ଛାଡ଼ି ଯାଏ । ତା ପାଇଁ ଆଉ ପୂର୍ବର ଖାଇ (ପାର୍ଥକ୍ୟ) ରହେ ନାହିଁ, ସେ ଏହି ଖାଇ ଉପରେ ସେତୁ କରି ଦେଇଥାଏ । ତାହାର ଚେତନା ଗୋଟିଏ ଲୋକରୁ ଅନ୍ୟଲୋକକୁ ଶୀଘ୍ର ଚାଲିଯାଏ ଏବଂ ଉଭୟ ଲୋକରେ ସେ ଗୋଟିଏ ବ୍ୟକ୍ତି ଭାବରେ କାର୍ଯ୍ୟ କରୁଛି ବୋଲି ଜାଣିପାରେ ।

ମସ୍ତିଷ୍କ ମାନସ ଶରୀରରୁ ଆସୁଥିବା ମାନସିକ ସ୍ପନ୍ଦନର ପ୍ରତିଉତ୍ତର ଦେବାପାଇଁ ଯେତେ ଅଧିକ ତାଲିମ ଲାଭ କରେ, ଦିବା ରାତ୍ରି ଭିତରେ ସେତୁ ଗଠନ ସେତିକି ସହଜ ହୋଇଯାଏ । ଭଲ ଶିକ୍ଷିତ ଘୋଡ଼ା ଯେପରି ସାମାନ୍ୟ ହାତ ବା ଗୋଡ଼ର ସ୍ପର୍ଶରେ ଦିଆ ଯାଉଥିବା ନିର୍ଦ୍ଦେଶକୁ ଠିକ ରୂପେ ବୁଝି, ପାଳନ କରେ ସେହିପରି ମସ୍ତିଷ୍କ ଅଧିକରୁ ଅଧିକ ମଣିଷର ଆଜ୍ଞାଧୀନ ଯନ୍ତ୍ର ହୋଇ ତା ଇଚ୍ଛା କେନ୍ଦ୍ରରୁ ମିଳୁଥିବା ସଂବେଗ ଧାରାକୁ ଠିକ ରୂପେ ବୁଝି କାର୍ଯ୍ୟ କରେ । ଯେଉଁ ବ୍ୟକ୍ତି ଏହିପରି ଭାବରେ ଦୁଇଟି ନିମ୍ନ ଲୋକକୁ ଚେତନାରେ ଏକତ୍ର କରିପାରିଥାଏ ତା ଆଗରେ କାମଲୋକ ଉନ୍ମୁକ୍ତ ହୋଇଯାଏ ଏବଂ ତହିଁରେ ଥିବା ସମ୍ଭାବନା ଓ ପରିବ୍ୟାପ୍ତ ଶକ୍ତି, ଅଧିକ ସେବା ଓ ସାହାଯ୍ୟ କରିବା ସୁଯୋଗ ସହିତ, ତାର ଅଧିକାର ଭୁକ୍ତ ହୁଏ । ତା ପରେ କଷ୍ଟ ପାଉଥିବା ଲୋକମାନଙ୍କ ସେବାରେ ଆନନ୍ଦ ଆସେ, କଷ୍ଟ ପାଉଥିବା ଲୋକମାନେ ତାଙ୍କ ଅଜ୍ଞାତରେ ସାହାଯ୍ୟ ଲାଭ କରି କଷ୍ଟରୁ ଅବ୍ୟାହତି ପାଆନ୍ତି । ସେମାନେ

ଅନୁଭବ କରନ୍ତି ଅପାଣା ଛାଏଁ କ୍ଷତରେ ଆରୋଗ୍ୟକାରୀ ରସ ଲଗାଇ ହୋଇଯାଇଛି, ସେମାନେ ଭଲ ହୋଇ ଯାଉଛନ୍ତି । ଏ ପର୍ଯ୍ୟନ୍ତ ଯେଉଁ ଭାରରେ କାନ୍ଧ ଭାଙ୍ଗି ପଡୁଥିଲା ତାହା ଆଶ୍ଚର୍ଯ୍ୟଜନକ ଭାବରେ ଉପ୍ସାସ ହୋଇଯାଇଛି ।

ଏକ ଜନ୍ମର ଜୀବନରୁ ଅନ୍ୟ ଏକ ଜନ୍ମର ଜୀବନ ସହିତ ସଂଯୋଗ ସ୍ଥାପନ କରିବାକୁ ହେଲେ ଏହାଠାରୁ ଅଧିକ ଯତ୍ନ ଦରକାର ହୁଏ । ନିରବଚ୍ଛିନ୍ନ ଭାବରେ ଦିନରାତି ସ୍ମୃତିକୁ ଧାରଣ କରି ରଖିବା ଅର୍ଥ କାମନା ଶରୀର ସମ୍ପୂର୍ଣ୍ଣ ଭାବରେ କାମ କରୁଛି ଏବଂ ସଂଯୋଜକ ସୂତ୍ର ଠିକ ଭାବରେ କାର୍ଯ୍ୟକାରୀ ଅବସ୍ଥାରେ ଅଛି । ଜଣେ କେହି ଜନ୍ମ ଜନ୍ମାନ୍ତର ସହିତ ସେତୁ ସ୍ଥାପନ କରିବାକୁ ଚାହିଁଲେ ତାଙ୍କୁ କାମନା ଶରୀରରେ ବା ମାନସ ଶରୀରରେ କେବଳ ସଚେତନ ଭାବରେ କାମ କରିବା ଅପେକ୍ଷା ଅଧିକ କଠିନ ସାଧନା କରିବାକୁ ପଡ଼ିବ । କାରଣ, ମାନସ ଶରୀର କେବଳ ନିମ୍ନ-ମାନସ ଲୋକର ବସ୍ତୁରେ ଗଠିତ । ସେ ସ୍ତରରୁ ପୁନର୍ଜନ୍ମ ହୋଇ ନଥାଏ । ମାନସ ଶରୀର ମଧ୍ୟ କାମନା ଓ ସ୍ଥୂଳ ଶରୀର ପରି କାଳକ୍ରମେ ମିଳେଇ ଯାଉଥିବାରୁ ପର ପାରକୁ କିଛି ନେଇ ଯାଇପାରେ ନାହିଁ । ସୁତରାଂ ପୂର୍ବ ଜନ୍ମର ସ୍ମୃତି ବିଷୟରେ ଯଦି ପ୍ରଶ୍ନ ଉଠେ, ତାହାହେଲେ ସେ ମାନସ ଲୋକର ଉଚ୍ଚତର ସ୍ତରରେ ତାହାର କାରଣ ଶରୀରରେ ସଚେତନ ଅବସ୍ଥାରେ କାର୍ଯ୍ୟ କରିବା ଦକ୍ଷତା ଲାଭ କରିଛି କି ନାହିଁ ସେ ପ୍ରଶ୍ନ ଉଠେ । କାରଣ, ଏହି କାରଣ ଶରୀର ଜନ୍ମ ଜନ୍ମାନ୍ତର ଧରି ଗତି କରେ, ଏହି ଶରୀରରେହିଁ ଅତୀତର ସବୁ ଜ୍ଞାନ ସଞ୍ଚିତ ଥାଏ, ସବୁ ଅତୀତ ଜୀବନର ଅଭିଜ୍ଞତା ଗଚ୍ଛିତ ରହେ ଓ ଚେତନା ଏହାରି ଭିତରକୁ ଆକର୍ଷିତ ହୋଇ ଆସେ ଏବଂ ଏହି ସ୍ତରରୁ ସଂସାରକୁ ପ୍ରତ୍ୟାବର୍ତ୍ତନ କରିଥାଏ । ଏହାହିଁ ପୁନର୍ଜନ୍ମ ।

ମଣିଷ ଭୂଲୋକ ତ୍ୟାଗ କରି ଗଲାପରେ ଯେଉଁ ଯେଉଁ ସ୍ତର ଦେଇ ଯାଏ ତାକୁ ଅନୁଧ୍ୟାନ କରି ଦେଖିବା ମୃତ୍ୟୁ ମହାରାଜାଙ୍କ ସାମ୍ରାଜ୍ୟ କେତେ ଦୂର ପର୍ଯ୍ୟନ୍ତ ବ୍ୟାପି ରହିଛି । ପ୍ରଥମେ ମଣିଷ ଏହି ଜଗତରେ ମୃତ୍ୟୁ କାଳରେ ପାର୍ଥିବ ଶରୀରର ସ୍ଥୂଳ ଅଂଶରୁ ନିଜକୁ ଅପସାରିତ କରି ନିଏ ଏବଂ ପରେ ସେ ଶରୀର ଖଣ୍ଡ ଖଣ୍ଡ ହୋଇ ସ୍ଥୂଳ ଜଗତର ମହାଭୂତରେ ଲୀନ ହୋଇଯାଏ । ତେଣୁ ସେ ଦେହରେ ଏପରି କିଛି ରହେ ନାହିଁ ଯହିଁରେ ଚୁମ୍ବକ ସତ୍ତା ରହି ଯାଇ ପାରିବ । ସ୍ଥୂଳ ଶରୀର ଛାଡ଼ିବା ପରେ ଜୀବାତ୍ମା ଇଥରୀୟ ଶରୀରରେ ମାତ୍ର

କେତେ ଘଣ୍ଟା ପାଇଁ ରହେ । ତାକୁ ଛାଡ଼ି ଯିବା ପରେ ଇଥରୀୟ ଶରୀର ତାର ମୂଳ ପଦାର୍ଥରେ ମିଶି ଯାଏ । ତେଣୁ ଇଥରୀୟ ଶରୀରରେ ଥିବା ମସ୍ତିଷ୍କ ସହିତ ସମ୍ପୃକ୍ତ କୌଣସି ସ୍ମୃତି ଏକ ଜୀବନରୁ ଅନ୍ୟ ଏକ ଜୀବନ୍‌କୁ ସେତୁ ନିର୍ମାଣରେ ସାହାଯ୍ୟ କରିପାରେ ନାହିଁ । ତା ପରେ ମଣିଷ କାମ ଲୋକକୁ ଯାଏ ଏବଂ ଯେ ପର୍ଯ୍ୟନ୍ତ ସ୍ଥୂଳ ଶରୀର ପରି କାମନା ଶରୀର ଜୀର୍ଣ୍ଣ ଅବସ୍ଥା ଲାଭ କରି ଗଳି ନ ପଡ଼େ ସେ ପର୍ଯ୍ୟନ୍ତ ସେହି ଲୋକରେ ରହେ । ଶେଷରେ ସେ ଯେପରି ସ୍ଥୂଳ ଶରୀରକୁ ଛାଡ଼ି ଆସିଥିଲା, ସେହିପରି ସେ କାମନା ଶରୀର ଓ କାମଲୋକ ଛାଡ଼ି ଚାଲିଯାଏ ଏବଂ କାମନା ଶରୀର ସ୍ଥୂଳ ଶରୀର ପରି ଖଣ୍ଡ ଖଣ୍ଡ ହୋଇ କାମଲୋକ ପଦାର୍ଥରେ ମିଶି ଯାଏ । ଫଳତଃ ତା ଦେହରେ ଯାହା କିଛି ସ୍ମୃତି ଧାରଣ କ୍ଷମ ଚୁମ୍ବକୀୟ ଉପାଦାନ ଥାଏ ତାହା ଛିନ୍ନ ହୁଏ । ମଣିଷ ମାନସ ଶରୀରରେ ଯାଇ ଦେବ ଲୋକରେ ରୂପ ମଣ୍ଡଳରେ ଅବସ୍ଥାନ କରେ । ସେଠାରେ ସେ ଶହ ଶହ ବର୍ଷ ରହେ । ନିଜ ବୃତ୍ତିଗୁଡ଼ିକର ଅନୁଶୀଳନ କରେ । ଯେତେବେଳେ ଉପଯୁକ୍ତ ସମୟ ଆସେ ସେ ପୁଣି ଏହି ଶରୀର ଛାଡ଼ି ବାହାରି ଯାଏ । ଯାହା କିଛି ସଞ୍ଚିତ ସ୍ମୃତି ଓ ଉପଲବ୍ଧି ପ୍ରସୂତ ଅଭିଜ୍ଞତା, ସେ ସବୁର ନିର୍ଯ୍ୟାସ ସ୍ଥାୟୀ ହୋଇ ରହୁଥିବା ଶରୀରକୁ ନେଇଯାଏ । ଅନ୍ୟ ସ୍ଥୂଳତର ଶରୀରମାନଙ୍କ ପରି ମାନସ ଶରୀରକୁ ମଧ୍ୟ ମିଳେଇ ଯିବାକୁ ଛାଡ଼ି ଦେଇଯାଏ । ଆମର ବର୍ତ୍ତମାନର ବିଚାର ଦୃଷ୍ଟିରୁ ନିମ୍ନ ମାନସଲୋକର ପଦାର୍ଥଗୁଡ଼ିକ ଅତି ସୂକ୍ଷ୍ମ ହୋଇ ଥିଲେ ସୁଦ୍ଧା ଉଚ୍ଚତର ଭାଗକୁ ଯିବାଭଳି ସୂକ୍ଷ୍ମତା ତାର ନାହିଁ । ତେଣୁ ମଣିଷକୁ ସେଗୁଡ଼ିକୁ ନିଜ ନିଜ ସ୍ତରରେ ମୂଳ ଉପାଦାନ ସହିତ ମିଶି ଯିବା ପାଇଁ ଫିଙ୍ଗି ଦେଇ ଆସିବାକୁ ପଡ଼େ ।

ଏ ପର୍ଯ୍ୟନ୍ତ ମଣିଷ ସାରା ପଥ ଶରୀର ପରେ ଶରୀର ତ୍ୟାଗ କରି କରି ଯାଉଥାଏ । କେବଳ ମାନସ ଲୋକର ଅରୂପ ଭାଗରେ ପହଞ୍ଚିଲେ କହିବାକୁ ହେବ ସେ ମୃତ୍ୟୁର ବିଶ୍ଳେଷଣକାରୀ ରାଜଦଣ୍ଡ ଅଧୀନରୁ ବାହାରକୁ ଆସିଲା । ପରିଶେଷରେ ମୃତ୍ୟୁ ରାଜ୍ୟ ସୀମା ପାର ହୋଇ ସେ କାରଣ-ଶରୀରରେ ବାସ କରେ ଯାହା ଉପରେ ମୃତ୍ୟୁର ଶାସନ ନାହିଁ ଏବଂ ଯେଉଁଥିରେ ସେ ସଂଗ୍ରହ କରିଥିବାସବୁ କିଛି ସାଇତି ରଖିଥାଏ । ଭବିଷ୍ୟତ ଜୀବନରେ କି ପ୍ରକାର ଅବସ୍ଥା ଭିତରେ ମଣିଷ ଜନ୍ମଗ୍ରହଣ କରିବ ତାର ସମସ୍ତ କାରଣ (ବୀଜ) ଏଥିରେ ଗଚ୍ଛିତ ଥିବାରୁ ଏହାର ନାମ କାରଣ-ଶରୀର ।

ତାହା ହେଲେ ମଣିଷ ମାନସ ଲୋକର ଅରୂପ ଭାଗର ଏହି କାରଣ-ଶରୀରରେ ସମ୍ପୂର୍ଣ୍ଣ ସଚେତନ ଭାବରେ କ୍ରିୟାଶୀଳ ହୋଇ ପାରିଲେ ଯାଇଁତାର ସ୍ମୃତି ଶକ୍ତିକୁ ମରଣର ପର ପାରକୁ ନେଇ ଯାଇପାରିବ । ଗୋଟିଏ ଅନୁନ୍ନତ ଜୀବାତ୍ମା ସେହି ଉଚ୍ଚ ଲୋକକୁ ଯାଇ ସେଠାରେ ସଚେତନ ରହିପାରିବ ନାହିଁ । ସେ ତାର ସବୁ ଯାକ ଗୁଣର ଅଙ୍କୁର ଘେନି ଏହି ଲୋକରେ ପ୍ରବେଶ କରେ । ସେଠାରେ ଅତୀତ ଓ ଭବିଷ୍ୟତ ଅନ୍ତର୍ଭୁକ୍ତ ଚେତନାର ସ୍ପର୍ଶ ଓ ଝଲକ ତାକୁ ଲାଗେ । ସେ ଝଲକରେ ହତବୁଦ୍ଧି ହୋଇ ଜୀବାତ୍ମା ପୁନର୍ଜନ୍ମ ପଥରେ ଅବତରଣ କରେ । ସେ ଏହି କାରଣଶରୀରରେ ଯେଉଁ ଅଙ୍କୁରଗୁଡ଼ିକ ଧାରଣ କରିଥାଏ, ପ୍ରତ୍ୟେକ ଲୋକରେ ଆସି ସେ ଲୋକର ସଂପୃକ୍ତ ଅଙ୍କୁର ଗୁଡ଼ିକୁ ବାହାରକୁ ଖୋଲି ରଖେ ଏବଂ ସେ ଅଙ୍କୁରଗୁଡ଼ିକ ପୃଥକ ପୃଥକ ଭାବରେ ସମ୍ପୃକ୍ତ ଲୋକରୁ ତାଙ୍କ ପାଇଁ ଉପଯୁକ୍ତ ପଦାର୍ଥ ସଂଗ୍ରହ କରି ନିଅନ୍ତି । ସେହି ହେତୁ ନିମ୍ନ ମାନସ ଲୋକର ରୂପ ସ୍ତରରେ ମାନସିକ ଅଙ୍କୁରଗୁଡ଼ିକ ତାଙ୍କ ଚାରିପଟରେ ସେହିସ୍ତରର ପଦାର୍ଥ ସଂଗ୍ରହ କରନ୍ତି, ଯାହାକି ପରବର୍ତ୍ତୀ ଜନ୍ମର ନୂଆ ମାନସ ଶରୀର ଗଠନ କରେ । ସେହି ସଂଗୃହୀତ ପଦାର୍ଥଗୁଡ଼ିକ ତାର ଅନ୍ତରସ୍ଥ ଅଙ୍କୁର ବହନ କରୁଥିବା ମାନସିକ ବୈଶିଷ୍ଟ୍ୟ ଅନୁରୂପ ହୋଇଥାଏ । ଯେପରି କି ଓକ ଗଛର ସାମାନ୍ୟ ବୀଜ ଭୂମି ଓ ବାୟୁ ମଣ୍ଡଳରୁ ଉପଯୁକ୍ତ ପଦାର୍ଥ ସଂଗ୍ରହ କରି ମହା ଦ୍ରୁମରେ ପରିଣତ ହୁଏ, ଓକ ବୀଜରୁ ଯେପରି ବାର୍ଚ୍ଚ ବାସିଡାର ଗଛ ହୋଇ ନଥାନ୍ତି କେବଳ ଓକ ହିଁ ଜନ୍ମ ହୋଇଥାଏ, ସେହିପରି ମାନସିକ ଅଙ୍କୁର ନିଜ ପ୍ରକୃତି ଅନୁସାରେ ବିକଶିତ ହୋଇଥାଏ ଅନ୍ୟଥା ହୁଏ ନାହିଁ । ଏହିପରି ଭାବରେ କର୍ମ ମଣିଷର ବାହନଗୁଡ଼ିକ ଗଠନ କରେ, ସେ ଯେଉଁ ପ୍ରକାର ବୀଜ ବପନ କରିଥାଏ ସେହି ପ୍ରକାର ଫଳ ମଣିଷ ଲାଭକରିଥାଏ । ତେଣୁ କାରଣ-ଶରୀର ଦ୍ୱାରା ଉନ୍ମୁକ୍ତ ଅଙ୍କୁର ଗୁଡ଼ିକ କେବଳ ନିଜ ଜାତିର ପଦାର୍ଥ ଆକର୍ଷଣ କରି ଏବଂ ତାକୁ ଆପଣାର ବୈଶିଷ୍ଟ୍ୟ ପୂର୍ଣ୍ଣ ଆକୃତିରେ ସଂସ୍ଥାପନ କରି ପରିପୁଷ୍ଟ ହୁଅନ୍ତି । ତଦ୍ୱାରା ମଣିଷ ଯେଉଁ ଗୁଣମାନ ପୂର୍ବ ଜନ୍ମରେ ଗଠନ କରିଥିଲା ଏ ଜନ୍ମରେ ସେହି ଅନୁରୂପ ଗୁଣ ପ୍ରକାଶ କରି ଥାଏ । ସେ ପୁଣି କାମଲୋକକୁ ଆସିବା ବେଳକୁ ସେହି ଲୋକର ଉପଯୁକ୍ତ ଅଙ୍କୁରଗୁଡ଼ିକୁ ବାହାରକୁ ବାହାର କରିଦିଏ ଏବଂ ଅଙ୍କୁରଗୁଡ଼ିକ

ଆପଣା ଛାଏଁ ଉପଯୁକ୍ତ କାମ ପଦାର୍ଥ ଭୌତିକ ସତ୍ତ୍ୱ ଆକର୍ଷଣ କରିଆଣନ୍ତି । ଏହିପରି ଭାବରେ ମଣିଷର କାମନା ଶରୀରରେ ଲକ୍ଷିତ କ୍ଷୁଧା, ତୃଷା, ଆବେଗ ଓ ଇନ୍ଦ୍ରିୟ ଜନିତ ବାସନା ପୁନରାଗମନ କରେ ଏବଂ ତାହାରେ କାମନା ଶରୀର ପୁନର୍ଗଠିତ ହୁଏ । ଯଦି ମଣିଷର ଅତୀତ ଜୀବନର ଚେତନା ଏହି ସବୁ ଲୋକ ଓ ପ୍ରକ୍ରିୟା ଭେଦ କରି ଆସିବାକୁ ଚାହିଁବ, ତାହା ହେଲେ ସେସବୁର ମୂଳରେ ଥିବା ଉଚ୍ଚ ସ୍ତରର କାରଣ ଜଗତରେ ଅର୍ଥାତ୍ କାରଣ ଶରୀରରେ ସମ୍ପୂର୍ଣ୍ଣ କ୍ରିୟାଶୀଳ ରହିବା ଆବଶ୍ୟକ । ସାଧାରଣ ଲୋକମାନେ ପୂର୍ବଜନ୍ମ କଥା ମନେ ରଖି ପାରୁ ନାହାନ୍ତି ତାର କାରଣ ହେଉଛି, ସେମାନେ କାରଣ ଶରୀରକୁ ଗୋଟିଏ ବାହନ ଭାବରେ ଗ୍ରହଣ କରି ସେଥିରେ ସଚେତନ ରହି ପାରନ୍ତି ନାହିଁ । କାରଣ ଶରୀର ନିଜେ ସକ୍ରିୟ ହୋଇ ନିଜର କାର୍ଯ୍ୟକ୍ରମ କରି ନାହିଁ । ଏଥିରେ ଜନ୍ମଜନ୍ମାନ୍ତରର ନିର୍ଯ୍ୟାସ ଓ ମଣିଷର ପ୍ରକୃତ 'ଅହଂ' ଥାଏ, ଯେଉଁଥିରୁ ସମସ୍ତ ପ୍ରକାଶିତ ହେଉଛି, କିନ୍ତୁ ତାହା ସକ୍ରିୟ ଭାବରେ କାର୍ଯ୍ୟ କରେ ନାହିଁ । ସେ ଏ ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ଆତ୍ମସଚେତନ ହୋଇ ନାହିଁ, ଯଦିଓ ଅଚେତନ ଅବସ୍ଥାରେ କାର୍ଯ୍ୟ କରୁଛି । ଏହା ଯେ ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ଆତ୍ମ-ସଚେତନ ନ ହୋଇଛି ସେ ପର୍ଯ୍ୟନ୍ତ ସ୍ମୃତି ଶକ୍ତି ଗୋଟିଏ ଲୋକରୁ ଅନ୍ୟ ଗୋଟିଏ ଲୋକକୁ ଗତି କରିପାରିବ ନାହିଁ ଏବଂ ସେହି କାରଣରୁ ଜନ୍ମରୁ ଜନ୍ମାନ୍ତର ମଧ୍ୟ ଅତିକ୍ରମ କରି ଯାଇ ପାରିବ ନାହିଁ । ମଣିଷର ଅଗ୍ରଗତି ସଙ୍ଗେ ସଙ୍ଗେ ସମୟ ସମୟରେ ଚେତନାର ଝଲକ ଭିତର ଦେଇ ଅତୀତ ଜନ୍ମର କିଛି କିଛି ଅଂଶ ପ୍ରକାଶିତ ହୋଇଥାଏ ସତ କିନ୍ତୁ କୌଣସି ନିରବଚ୍ଛିନ୍ନ ସ୍ମୃତି ଜାଗ୍ରତ କରିବା ପାଇଁ ଏହି ଝଲକ ସ୍ଥିର ଆଲୋକରେ ପରିଣତ ହେବା ଦରକାର ।

ପ୍ରଶ୍ନ ଉଠିପାରେ ଏହିପରି ଝଲକର ପୁନରାବୃତ୍ତିକୁ ଉତ୍ସାହିତ କରାଯାଇ ପାରିବ କି ? ଉଚ୍ଚତର ଲୋକରେ କ୍ରମେ କ୍ରମେ ବଢୁଥିବା ଚେତନାର ଏହି କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିବା ସମ୍ଭବପର ହେବ କି ? ଉତ୍ସାହ ଓ ଧୈର୍ଯ୍ୟ ଥିଲେ ନିମ୍ନ ସ୍ତରରେ ଥିବା ଲୋକ ଏଦିଗରେ ପ୍ରଚେଷ୍ଟା କରି ପାରନ୍ତି । ସେ ଅଧିକରୁ ଅଧିକ ଶାଶ୍ୱତ ଆତ୍ମାରେ ବିଶ୍ରାମ କରି ନିଜର ଆଗ୍ରହ ଦୃଷ୍ଟିରୁ ସାଧାରଣ ଜୀବନର ନଗଣ୍ୟ କ୍ଷଣସ୍ଥାୟୀ ବସ୍ତୁରୁ ନିଜର ଚିନ୍ତା ଓ ଶକ୍ତିକୁ ଅଧିକରୁ ଅଧିକ ଅପସାରଣ କରି ନେଇ ପାରନ୍ତି । ଏତଦ୍ୱାରା ମୁଁ କହୁ ନାହିଁ

ମଣିଷ ସ୍ୱପ୍ନ ପ୍ରିୟ, ଅବାସ୍ତବ ଓ ଅସ୍ଥିର ଭ୍ରାମ୍ୟମାଣ ହୋଇ ସମାଜରେ ତଥା ପରିବାରରେ ଜଣେ ଅକ୍ଷମ ବ୍ୟକ୍ତି ହୋଇଯାଉ । ବରଂ କଥାଟି ସମ୍ପୂର୍ଣ୍ଣ ବିପରୀତ । ସଂସାରରେ ତା ଉପରେ ଯେତେ ପ୍ରକାର ଦାବୀ ସେଗୁଡ଼ିକ ସେ ପୂରଣ କରିବ ଏବଂ ଅଧିକ ପୂର୍ଣ୍ଣତା ସହିତ କାର୍ଯ୍ୟ କରିବ । କାରଣ ତା ଭିତରେ ଯେଉଁ ମଣିଷ କାର୍ଯ୍ୟ କରୁଛି ତାର ମହାନତା ଯୋଗୁଁ ସେ କୌଣସି ଏକ ଅନୁନ୍ନତ ଲୋକ ପରି ଅପରିଚ୍ଛନ୍ନ ଓ ଅଯତ୍ନ ଭାବରେ କାର୍ଯ୍ୟ କରି ପାରିବ ନାହିଁ । ତା ପକ୍ଷରେ କର୍ତ୍ତବ୍ୟ ହିଁ କର୍ତ୍ତବ୍ୟ । ଯେ ପର୍ଯ୍ୟନ୍ତ କୌଣସି ବ୍ୟକ୍ତିର ଋଣ ତାଉପରେ କିଛି ମାତ୍ରାରେ ଅଛି ତାକୁ ଶେଷ କପର୍ଦ୍ଦକ ପର୍ଯ୍ୟନ୍ତ ପରିଶୋଧ କରିବାକୁ ପଡ଼ିବ । ସମସ୍ତ ଜ୍ଞାନ ଓ ନିଷ୍ଠା ସହିତ ପ୍ରତ୍ୟେକ କର୍ତ୍ତବ୍ୟକୁ ଶେଷ ପର୍ଯ୍ୟନ୍ତ ପୂରଣ କରିବାକୁ ହେବ । କିନ୍ତୁ ତାର କୌଣସି ସ୍ୱାର୍ଥ ଏଥିରେ ନିବଦ୍ଧ ରହିବ ନାହିଁ ବା ତାର ଚିନ୍ତା ଏହାର ଫଳାଫଳରେ ଆବଦ୍ଧ ହେବ ନାହିଁ । ଯେଉଁ ମୁହୂର୍ତ୍ତରେ ତାର କର୍ତ୍ତବ୍ୟ ଶେଷ ହେବ ଏବଂ ସେ ତହିଁରୁ ଅବ୍ୟାହତି ପାଇବ, ତାର ଚିନ୍ତା ପୁଣି ଚିରନ୍ତନ ଜୀବନକୁ ଫେରି ଉଚ୍ଚତର ଗତି ପାଇଁ ଯଥେଷ୍ଟ ବଳ ସଞ୍ଚୟ କରି ଉଚ୍ଚତର ସ୍ତରକୁ ଉଠି ଯିବ ଏବଂ ସାଂସାରିକ ଜୀବନର ନଗଣ୍ୟତା ବୋଧ କରି ସେଠାରେ ଜୀବନ ଯାପନ କରିବାକୁ ଆରମ୍ଭ କରିବ । ସେ ବରାବର ଏହିପରି କରିବା ଫଳରେ ଏବଂ ନିଜକୁ ଉଚ୍ଚ ଓ ବସ୍ତୁ ରହିତ ଚିନ୍ତାରେ ଅଭ୍ୟସ୍ତ କରିବା ପ୍ରଚେଷ୍ଟା ବଳରେ ତା ଚେତନାର ଉଚ୍ଚତର ସଂଯୋଜକଗୁଡ଼ିକୁ ଜୀବନ୍ତ କରିଦିଏ ଏବଂ ସେ ସବୁ ଚେତନା ରୂପରେ ନିମ୍ନତର ଜୀବନରେ ପ୍ରକାଶିତ ହୁଏ, ଯାହା କି ସେ ନିଜେ ଅଟେ ।

ଯେଉଁ ଲୋକରେ କାର୍ଯ୍ୟ କଲେ ମଧ୍ୟ ମଣିଷ ଏକ ଓ ଅଭିନ୍ନ । ସେ ଯେତେବେଳେ ନିରବଚ୍ଛିନ୍ନ ଭାବରେ ସଚେତନ ଅବସ୍ଥାରେ ପାଞ୍ଚୋଟି ଯାକ ଲୋକରେ କାର୍ଯ୍ୟ କରେ, ସେତେବେଳେ ତାର ପ୍ରକୃତ ବିଜୟର ଆନନ୍ଦ ଲାଭ ହୁଏ । ଯେଉଁ ବ୍ୟକ୍ତିମାନଙ୍କୁ ଆମେ 'ମହାତ୍ମା' ବା 'ମହାମାନବ' କହୁଁ ସେ କେବଳ ନିମ୍ନତର ତିନି ଲୋକରେ ସଚେତନ ଅବସ୍ଥାରେ କାର୍ଯ୍ୟ କରନ୍ତି, ସେତିକି ନୁହେଁ, ଏ ତିନି ଲୋକ ଉର୍ଦ୍ଧ୍ୱରେ ଯେଉଁ ଐକ୍ୟ ମଣ୍ଡଳ ଅଛି, ସେହି ଚତୁର୍ଥ ମଣ୍ଡଳରେ ମଧ୍ୟ କାର୍ଯ୍ୟ କରନ୍ତି । ତାକୁ ମାଣ୍ଡୁକ୍ୟ ଉପନିଷଦରେ 'ତୁରୀୟ' (ଚତୁର୍ଥ)' ଲୋକ ବୋଲି କୁହାଯାଇଛି । ସେଠାରେ କାହିଁକି, ତାହାଠାରୁ ଆହୁରି ଉର୍ଦ୍ଧ୍ୱରେ ଅବସ୍ଥିତ ନିର୍ବାଣ ଲୋକରେ ମଧ୍ୟ ସେମାନେ

ସଚେତନ ଅବସ୍ଥାରେ କାର୍ଯ୍ୟ କରିପାରନ୍ତି । ତାଙ୍କର କ୍ରମ ବିକାଶ ପୂର୍ଣ୍ଣତା ଲାଭ କରିଛି । ଏ ଜୀବନ ବିବର୍ତ୍ତନର ଗତି ସେମାନେ ସମ୍ପୂର୍ଣ୍ଣ କରି ସାରିଛନ୍ତି । ଯେଉଁମାନେ ଧୀରେ ଧୀରେ କ୍ରମ ବିକାଶ ପଥରେ ଅଗ୍ରସର ହେଉଛନ୍ତି କାଳକ୍ରମେ ସେମାନେ ସେହି ମହାତ୍ମାମାନଙ୍କ ପରି ହେବେ । ଏହା ଏକ ଚେତନାର ଐକୀକରଣ, ବିକାଶର ଏହି ସ୍ତରରେ ବ୍ୟବହାର ପାଇଁ ବାହନ ଗୁଡ଼ିକ ପ୍ରସ୍ତୁତ ରହିଥାଏ ସତ କିନ୍ତୁ ସେଗୁଡ଼ିକ ମଣିଷକୁ ଆବଦ୍ଧ କରି ରଖନ୍ତି ନାହିଁ । ମଣିଷ ତା କାର୍ଯ୍ୟ ପାଇଁ ଯେଉଁ ଶରୀର ଉପଯୁକ୍ତ ମନେ କରେ ତାହା ବ୍ୟବହାର କରେ ।

ଏହିପରି ଭାବରେ ବସ୍ତୁ, ସମୟ ଓ ଦୂରତ୍ୱକୁ ଜୟ କରି ହୁଏ । ଜଣେ ଏକୀଭୂତ ମଣିଷ ପକ୍ଷରେ ଏସବୁର ଅସ୍ତିତ୍ୱ ରହେ ନାହିଁ । ସେ କ୍ରମୋନ୍ନତି ପଥରେ ଗତି କରି ଦେଖିଛି ଯେ ସେ ଗୁଡ଼ିକର ବାଧା କ୍ରମେ କ୍ରମେ ହ୍ରାସ ପାଉଛି, ଏପରିକି କାମ ଲୋକରେ ଏହି ଜଗତ ଅପେକ୍ଷା ପାର୍ଥକ୍ୟ ବୋଧ ଅନେକ କମ । ଅନ୍ୟାନ୍ୟମାନଙ୍କ ସହିତ ତାର ପାର୍ଥକ୍ୟ ଏତେ ଅଧିକ ଅନୁଭୂତ ହୁଏ ନାହିଁ । କାମନା ଶରୀରରେ ଏତେ ଦ୍ରୁତ ବେଗରେ ଗତି କରିବା ସମ୍ଭବ ହୁଏ ଯେ ମନେ ହେବ ମଣିଷ ସମୟ ଓ ଦୂରତ୍ୱକୁ ଜୟ କରିଛି । ଯଦିଓ ସେ ଜାଣେ ଯେ ସେ ଦୂରତ୍ୱ ଅତିକ୍ରମ କରୁଛି ତଥାପି ଗତି ଏତେ ଚଞ୍ଚଳ ଯେ ଦୂରତ୍ୱର ଅସ୍ତିତ୍ୱ ତାକୁ ଜଣାପଡ଼େ ନାହିଁ । ସେଠାରେ ଦୁଇ ଜଣ ବନ୍ଧୁ ପରସ୍ପର ମଧ୍ୟରେ କୌଣସି ବ୍ୟବଧାନ ଥିବାପରି ଜାଣି ପାରନ୍ତି ନାହିଁ । ସେହି ପ୍ରଥମ ବିଜୟରୁ ହିଁ ସ୍ଥୂଳ ଜଗତର ଦୂରତା ଲୋପ ହୋଇଯାଏ । ସେ ଯେତେବେଳେ ମାନସ ଜଗତକୁ ଉଠେ ସେ ଦେଖେ ଆଉ ଗୋଟିଏ ଶକ୍ତି ତାର ଆୟତ୍ତାଧୀନ ହୋଇଛି । ସେ ଗୋଟିଏ ସ୍ଥାନକୁ ସ୍ମରଣ କରିବା ମାତ୍ରେ ସେ ସ୍ଥାନରେ ଉପସ୍ଥିତ ହୋଇ ଯାଉଛି । ସେ ଜଣେ ବନ୍ଧୁଙ୍କୁ ଚିନ୍ତା କରିବା ମାତ୍ରେ ସେ ବନ୍ଧୁ ତା ସମ୍ମୁଖରେ ଉପସ୍ଥିତ ହୋଇ ଯାଉଛନ୍ତି । ଏପରିକି ଏହି ତୃତୀୟ ଲୋକର ଚେତନା ବସ୍ତୁ, ଦୂରତ୍ୱ ଓ ସମୟ ଆଦିର ପ୍ରତିବନ୍ଧକ ଅତିକ୍ରମ କରିଥାଏ । ସେ ଇଚ୍ଛାନୁସାରେ ଯେକୌଣସି ସ୍ଥାନରେ ଉପସ୍ଥିତ ହୋଇପାରେ । ଯାହା କିଛି ବସ୍ତୁ ଦେଖିବାକୁ ମନ କରେ, ସେଥିପ୍ରତି ମନ ନିବେଶ କରିବା ମାତ୍ରେ ତାହା ସବୁ ଏକା ବେଳକେ ଦେଖାଯାଏ, ଯାହା ସବୁ ଶୁଣିବା କଥା ତାହା ସବୁ ଏକା ଥରକେ ଶୁଣି ହୁଏ । ଏହି ତୃତୀୟ ଜଗତରେ, ନିମ୍ନତର ଜଗତମାନଙ୍କରେ

ଥିବା ଦୂରତ୍ୱ, ବସ୍ତୁ ଓ ସମୟ ଉଭେଇ ଯାଇଥିବାରୁ ସେଠାରେ 'ଚିରନ୍ତନ ବର୍ତ୍ତମାନ' ଭିତରେ ଅନୁକ୍ରମିକତା ରହି ପାରେ ନାହିଁ । ସେ ଯେତେବେଳେ ଆହୁରି ଉର୍ଦ୍ଧ୍ୱକୁ ଗତି କରେ, ତାର ଚେତନାରେ ଥିବା ପ୍ରତିବନ୍ଧକ ମଧ୍ୟ ଦୂର ହୋଇଯାଏ ଏବଂ ସେ ଅନ୍ୟାନ୍ୟ ଚେତନା ବା ଜୀବାତ୍ମାମାନଙ୍କ ସହିତ ନିଜର ଏକତ୍ୱ ଅନୁଭବ କରିପାରେ, ଅର୍ଥାତ୍ ସେମାନେ ଯେପରି ଚିନ୍ତା କରନ୍ତି ଓ ଅନୁଭବ କରନ୍ତି ସେ ନିଜେ ସେହିପରି ଚିନ୍ତା ଓ ଅନୁଭବ କରିପାରେ, ସେମାନେ ଯାହା ଜାଣନ୍ତି ସେ ତାହା ଜାଣିପାରେ । ସେହି ମୁହୂର୍ତ୍ତ ପାଇଁ ସେ ସେମାନଙ୍କ ସୀମିତ ଅବସ୍ଥାକୁ ନିଜର କରି ନିଏ ଓ ତଦ୍ୱାରା ସେମାନେ କିପରି ଭାବରେ ଚିନ୍ତା କରୁଛନ୍ତି ତାହା ଠିକ ଭାବରେ ବୁଝି ପାରେ; କିନ୍ତୁ ତା ସଙ୍ଗେ ସଙ୍ଗେ ତା ନିଜର ଚେତନା ମଧ୍ୟ ରହିଥାଏ । ତାର ମହତ୍ତର ଜ୍ଞାନ ବଳରେ ଅପରର ସଂକୁଚିତ ଓ ସୀମିତ ଚିନ୍ତାଗୁଡ଼ିକ ସହିତ ନିଜର ସମତ୍ୱ ପ୍ରତିଷ୍ଠା କରି ମୃଦୁ ଭାବରେ ତାହାର ଚେତନା ପରିସରକୁ ପ୍ରସାରିତ କରିଦିଏ । ଯେତେବେଳେ ସେ ଅନ୍ୟମାନଙ୍କଠାରୁ ପୃଥକ ନ ରହି ଅନୁଭବ କରେ ଯେ ସବୁରି ଭିତରେ ଗୋଟିଏ ଆତ୍ମା ବିଦ୍ୟମାନ, ସେତେବେଳେ ସେ ବୁଝି ପାରେ ସେମାନେ ସଂସାରର ଅସ୍ତିତ୍ୱ କିପରି ଭାବରେ ଅନୁଭବ କରୁଛନ୍ତି । ତାଙ୍କର ଆତ୍ମବୋଧ ହୁଏ ଯେ ସେ ଅନ୍ୟମାନଙ୍କଠାରୁ ଭିନ୍ନ ନୁହନ୍ତି ଓ ସମସ୍ତଙ୍କ ଭିତରେ ବିରାଜିତ ଆତ୍ମା ଏକ ସେ ପ୍ରକୃତିରେ ସମ୍ପୂର୍ଣ୍ଣ ନୂତନ କାର୍ଯ୍ୟକ୍ରମ ହାତକୁ ନିଅନ୍ତି । ସେ ଐକ୍ୟ ମଣ୍ଡଳରୁ ନିମ୍ନ ଲୋକକୁ ଶକ୍ତି ପ୍ରେରଣ କରନ୍ତି । ଇତର ପ୍ରାଣୀମାନଙ୍କ ବିଷୟରେ ମଧ୍ୟ ସେ ବୁଝି ପାରନ୍ତି । ସେଥିପାଇଁ ସମସ୍ତଙ୍କ ପ୍ରୟୋଜନ ଠିକ୍ ରୂପେ ବୁଝି, ସେମାନେ ନିରୂପାୟ ଅବସ୍ଥାରେ ସାହାଯ୍ୟ ପାଇଁ ଅଣ୍ଟାଳି ହେଉଥିବା ବେଳେ, ଆବଶ୍ୟକ ସାହାଯ୍ୟ ପହଞ୍ଚାଇ ଦେଇ ପାରନ୍ତି ।

ତାଙ୍କର ବିଜୟ କେବଳ ତାଙ୍କ ପାଇଁ ନୁହେଁ ସାରା ବିଶ୍ୱପାଇଁ, କାରଣ କ୍ରମ ବିକାଶର ସୋପାନରେ ତାଙ୍କଠାରୁ ନିମ୍ନତର ଯେତେ ଅଛନ୍ତି ସେମାନଙ୍କ ସେବା ପାଇଁ ସେ ତାଙ୍କର ବ୍ୟାପକ ଶକ୍ତିକୁ ଅର୍ପଣ କରିପାରନ୍ତି । ଏହିପରି ଭାବରେ ସେ ସାରା ଜଗତରେ ସେ ଆତ୍ମ ସଚେତନ ହୋଇ ପଡ଼ନ୍ତି ଏବଂ ପ୍ରତ୍ୟେକ ବିକଳ କ୍ରନ୍ଦନର ପ୍ରତିବେଦନରେ ଶିହରିତ ହେବାକୁ ଏବଂ ପ୍ରତ୍ୟେକ ଆନନ୍ଦ ଓ ଦୁଃଖରେ ସ୍ପନ୍ଦିତ ହେବାକୁ ଶିଖନ୍ତି । ସର୍ବତ୍ର ଉପସ୍ଥିତ ରହି, ସବୁ କିଛି ଲାଭ କରି ସବୁଠାରେ ପହଞ୍ଚି ପାରନ୍ତି ଏବଂ ମଣିଷରୁ ମହାତ୍ମା ହୋଇ

ଯାଆନ୍ତି ଅର୍ଥାତ୍ ''ଯାହାଙ୍କର ଆଉ କିଛି ଶିଖିବାକୁ ନାହିଁ ।'' ଏଥିରୁ କେହି ବୁଝିବେ ନାହିଁ ଯେ ଆମେ କହିବାକୁ ଚାହୁଁ, ଯେ କୌଣସି ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ ଯାହା କିଛି ସମ୍ଭବ ସେ ସମସ୍ତ ଜ୍ଞାନ ମହାତ୍ମାଙ୍କର ଚେତନାରେ ବିଦ୍ୟମାନ । କିନ୍ତୁ ପ୍ରକୃତ କଥାଟି ହେଉଛି, କ୍ରମ ବିକାଶର ଏହି ପର୍ଯ୍ୟାୟରେ ବିଶ୍ୱରେ ଏପରି କିଛି ରହେ ନାହିଁ ଯାହା ତାଙ୍କଠାରେ ପ୍ରଚ୍ଛନ୍ନ ରହିବବା ଏପରି କିଛି ନାହିଁ ଯାହା ପ୍ରତି ଦୃଷ୍ଟି ଦେଲେ ତାଙ୍କ ଚେତନାରେ ବୁଝା ପଡ଼ିବ ନାହିଁ । ଏହି ସମସ୍ତ ପ୍ରାଣୀମାନଙ୍କ କ୍ରମ ବିକାଶର ପରିସୀମା ଭିତରେ ସେ ବୁଝି ନ ପାରିବା ଭଳି କିଛି ନାହିଁ ବା ଏପରି କେହି ନାହିଁ ଯାହାକୁ ସେ ସାହାଯ୍ୟ କରିପାରିବେ ନାହିଁ ।

ତାହାହିଁ ମଣିଷର ଚୁଡାନ୍ତ ବିଜୟ । ମୁଁ ଯେତେ କଥା କହିଲି ସେ ସବୁ ମୂଲ୍ୟହୀନ ପଣ୍ଡ ହୋଇଯିବ ଯଦିସେ ସବୁକୁ ଆମେ ଇହ ଜଗତରେ ଆତ୍ମା ବୋଲି ପରିଚିତ ସଂକୁଚିତ - ଆତ୍ମା (ଦେହାତ୍ମା) ହିତରେ ଲାଭ କରିବାକୁ ଇଚ୍ଛା କରିବା । ମୁଁ ତୁମକୁ ଯେତେ ସବୁ ପାହାଚ ଚଢ଼ି ପାର ହୋଇ ଯିବାକୁ ପ୍ରବର୍ତ୍ତାଉଛି ସେ ସମସ୍ତ କଷ୍ଟ ସହିବାର ମୂଲ୍ୟ କିଛି ରହିବ ନାହିଁ, ଯଦି ପାପରେ ପଡ଼ି କଷ୍ଟ ପାଉଥିବା ଜୀବାତ୍ମାମାନଙ୍କଠାରୁ ଦୂରରେ ଅଲଗା ରଖି, ଏହା ତୁମକୁ ଗୋଟିଏ ଏକୁଟିଆ ଦେଉଳ ଶିଖରରେ ବସାଇ ଦିଏ ଏବଂ ଯେଉଁ ଜୀବନ କେନ୍ଦ୍ରରେ ତୁମେ ଓ ସେମାନେ ଏକ ସେଠାରେ ପହଞ୍ଚିବା ପାଇଁ ସେମାନଙ୍କୁ ପଥ ଦେଖାଇ ଦେବାରେ ସହାୟକ ନହୁଏ । ଶ୍ରୀଗୁରୁ ତାଙ୍କ ଚେତନାକୁ ଯେଉଁ ଦିଗରେ ପ୍ରେରଣ କରନ୍ତି ତାହା ସେ ଦିଗରେ ପ୍ରସାରିତ ହୋଇଯାଏ, ଯେଉଁ ବିଷୟ ପ୍ରତି ନିର୍ଦ୍ଦେଶ ଦିଅନ୍ତି ତାହା ଆତ୍ମସାତ୍ (assimitation) କରି ପାରେ । ସେ ଯାହା ଜାଣିବାକୁ ଚାହାନ୍ତି ଚେତନା ତାହା ଜାଣିପାରେ । କିନ୍ତୁ ଏସବୁ ସେ କରି ଥାଆନ୍ତି କାରଣ ଏତଦ୍ଵାରା ସେ ଅନ୍ୟକୁ ସମ୍ପୂର୍ଣ୍ଣ ରୂପେ ସାହାଯ୍ୟ କରି ପାରିବେ । ଏପରି କିଛି ନାହିଁ ଯାହା ସେ ଅନୁଭବ କରି ପାରିବେ ନାହିଁ, ଏପରି କେହି ନାହିଁ ଯାହାକୁ ସେ ପାଳନ ପୋଷଣ କରି ପାରିବେ ନାହିଁ, ଯାହାକୁ ସେ ସାହାଯ୍ୟ କରି ପାରିବେ ନାହିଁ, ବଳବାନ କରି ଦେଇ ପାରିବେ ନାହିଁ, ଯାହାର କ୍ରମ ବିକାଶରେ ସାହାଯ୍ୟ କରି ପାରିବେ ନାହିଁ । ତାଙ୍କ ପାଇଁ ସମଗ୍ର ବିଶ୍ୱ ଗୋଟିଏ କ୍ରମ ବିକାଶଶୀଳ ଐକିକ ଏବଂ ଏଥିରେ ସେ କ୍ରମ ବିକାଶ କାର୍ଯ୍ୟରେ ସହାୟକ ସ୍ଥାନର ଅଧିକାରୀ । ସେ କ୍ରମବିକାଶର ଯେ କୌଣସି ସୋପାନ ସହ ନିଜକୁ ମିଶାଇ ଦେଇ ପାରନ୍ତି ଏବଂ ସେହି ସୋପାନରେ ଯେଉଁ

ପ୍ରକାର ସାହାଯ୍ୟର ପ୍ରୟୋଜନ ତାହା ପ୍ରଦାନ କରି ପାରନ୍ତି । ସେ ଭୂତ ସର୍ଗଙ୍କୁ (Elemental Kingdom) ନିମ୍ନତର ଜଗତକୁ ପ୍ରବେଶ କରିବାରେ ସାହାଯ୍ୟ କରନ୍ତି ଏବଂ ପ୍ରତ୍ୟେକ ଖଣିଜ, ଉଦ୍ଭିଦ, ପ୍ରାଣୀ ଓ ମଣିଷମାନଙ୍କୁ ପ୍ରତ୍ୟେକଙ୍କ ପ୍ରୟୋଜନ ଅନୁସାରେ ନିଜ ଭଳି ଜାଣି ତାଙ୍କୁ ସାହାଯ୍ୟ କରି ଥାଆନ୍ତି । ତାଙ୍କ ଜୀବନର ଗୌରବ ହେଉଛି ସେ ସମସ୍ତଙ୍କ ସହିତ ଏକ ଅଟନ୍ତି ତଥାପି ସେ ସମସ୍ତଙ୍କୁ ସାହାଯ୍ୟ କରି ପାରନ୍ତି ଏବଂ ଏହି ସାହାଯ୍ୟ କରିବା ଭିତରେ ସାହାଯ୍ୟ ଲାଭକାରୀ ସେ ନିଜେ ଏହି ଆତ୍ମୋପଲବ୍ଧି ଲାଭ କରି ଥାଆନ୍ତି ।

ଏସବୁ କିପରି ଘଟି ପାରେ ତାର ରହସ୍ୟ ମଣିଷର ଅଭିବୃଦ୍ଧି ସାଙ୍ଗରେ ଚେତନା ପ୍ରସାରିତ ହୋଇ, ନିଜତ୍ୱ ନ ହରାଇ ଅଧିକରୁ ଅଧିକ କୋଳାଗ୍ରତ କରିବା ସଙ୍ଗେ ସଙ୍ଗେ ଯେତେବେଳେ ସବୁ କିଛି ଅଧିକରୁ ଅଧିକ ପ୍ରାଞ୍ଜଳ ଓ ଜୀବନ୍ତ ହେବ, ସେତେବେଳେ କ୍ରମେ କ୍ରମେ ଉନ୍ମୋଚିତ ହୋଇଯିବ । ଯେତେବେଳେ ବିନ୍ଦୁ ବଳୟରେ ପରିଣତ ହେବ, ବଳୟ ଦେଖିବ ଯେ ନିଜେ ସେ ମଧ୍ୟ ବିନ୍ଦୁ ଏବଂ ପ୍ରତ୍ୟେକ ବିନ୍ଦୁ ସବୁ କିଛି ଧାରଣ କରିଛି ଏବଂ ନିଜେ ଅନ୍ୟ ବିନ୍ଦୁମାନଙ୍କ ସହ ଅଭେଦ ବୋଲି ବୁଝିବ ଓ ଅନୁଭବ କରିବ ବାହାରେ ଯାହା ଦୃଶ୍ୟମାନ ତାହା ଭିତରର ପ୍ରତିବିମ୍ବ ମାତ୍ର, ପରମାତ୍ମା ହିଁ ଏକମାତ୍ର ଜୀବନ ଏବଂ ଯାହା ପାର୍ଥକ୍ୟ ଦେଖା ଯାଉଛି ତାହା ମାୟା ସେତେବେଳ ତାର (ମଣିଷର) ମାୟା ଉପରେ ବିଜୟ ଲାଭ ହୋଇଯିବ ।

